# କାଞ୍ଚନ କୁନ୍ତଳାର ତରବାରୀ

ବିନୋଦ ଚନ୍ଦ୍ର ନାୟକ



ଆର୍ଯ୍ୟ-ଷ୍ଟୁଡେଣ୍ଟସ୍ ଷ୍ଟୋର

# କାଞ୍ଚନ କୁନ୍ତଳାର ତରବାରୀ

ପ୍ରକାଶିକା :

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

ବାଲୁବଜାର, କଟକ-୨

ପ୍ରକାଶନ ଉପଦେଷ୍ଟା :

**ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର**

ପ୍ରଥମ ସଂସ୍କରଣ-୧୯୯୦

ମୁଦ୍ରଣ :

**ଆନନ୍ଦ ପ୍ରେସ୍**

ପିଠାପୁର, କଟକ

ପ୍ରଚ୍ଛଦ :

**ଶିବ ପାଣିଗ୍ରାହୀ**

**ମୂଲ୍ୟ :**

ସାଦା : ୨୫-୦୦

ବନ୍ଧାଇ : ୨୮-୦୦

## Kanchana Kuntalara Tarabari

**Sri Binod Chandra Nayak.**

Publisher :

**Smt. Annapurna Mishra**

Cuttack 'students' store.

Publicatian Adviser

**Dr. K. P. Mishra**

First Edition—1990

Balubazar, cuttack-2

Price.

Papular Rs. 25 00

Deluxe Rs. 28-00

# ସୂଚୀ

## ପ୍ରଥମ ପର୍ବ


| | | |
|---|---|---|
| ୧ । | ହେ କୋଧ ! ହେ ପରମ ବ୍ରାହ୍ମଣ ! | ୧ |
| ୨ । | ତ୍ରାଗନ୍ | ୩ |
| ୩ । | ଦୁଇଟି ନିର୍ଜନ ମହ୍ୟ | ୭ |
| ୪ । | ଭିମାନରୁ ବନ୍ୟାର ଭୂତ | ୯ |
| ୫ । | ବଡ଼ ଅସମୟ | ୧୧ |
| ୬ । | ପାପଘ୍ନ ମନ୍ତ୍ର | ୧୩ |
| ୭ । | ତୁମ ବଶମ୍ବଦ ହେମନ୍ତ ! | ୧୫ |
| ୮ । | ଏସିଆର ଶେଷ ସଓ୍ଵାର | ୧୬ |
| ୯ । | ପ୍ରାକ୍ତନ ଗର୍ଦ୍ଦଭ | ୧୮ |
| ୧୦ । | ଦୁଇଟି ଶାଗୁଣା ପରସ୍ପର | ୧୯ |
| ୧୧ । | ଦ୍ଵିଷ ମାଗେ -କନ୍ୟା ..! | ୨୨ |
| ୧୨ । | ଗୃଧ୍ରିଣୀ | ୨୪ |
| ୧୩ । | ଆରକ୍ତ ବିରକ୍ତ ପାପା | ୨୬ |
| ୧୪ । | ଛ ଡେସିମିଲ୍ ବସୁନ୍ଧରା | ୨୭ |
| ୧୫ । | ହେ ମୁହୂର୍ତ୍ତ ! ମୁଁ ମାନ ଭଣ୍ଡାରୀ | ୩୧ |
| ୧୬ । | କାଞ୍ଚନ କୁନ୍ତଳାର ଛରବାଘ | ୩୨ |
| ୧୮ । | ଶେଷ ଦାନ | ୪୯ |
| ୧୯ । | ଦ୍ଵିଜାପୁତା ସମର୍ଥନର ଏକ ଖସଡ଼ା | ୫୦ |


## ଦ୍ଵିତୀୟ ପର୍ବ


| | | |
|---|---|---|
| ୨୦ । | ଜ୍ୟୋତ୍ସ୍ନାରେ | ୭୫ |
| ୨୧ । | ରାଜହଂସର ରାତି | ୮୨ |
| ୨୨ । | ଆଉ ବାରେ ଫେରିଆସ | ୮୫ |
| ୨୩ । | ଅଶନି ସଙ୍କେତ | ୮୮ |
| ୨୪ । | ଇସ୍ତାର | ୯୪ |

# ହେ କ୍ରୋଧ ! ହେ ପରମ ବ୍ରାହ୍ମଣ !

ହେ କ୍ରୋଧ ! ହେ ଅହଂକାର ! ଊର୍ଦ୍ଧ୍ୱ ପୁଣ୍ଡ୍ର, ରକ୍ତର ତିଳକ
ଜାଗ ତୁମେ
ମେରୁଦଣ୍ଡଭିତର ଦଣ୍ଡୀ !
ଅନବଚ୍ଛିନ୍ନ ସ୍ଫୁରଣ କରଣ !
ଉଚ୍ଚାର ମାରଣ ମନ୍ତ୍ର-ହ୍ରୀଂ ଶ୍ରୀଂ କ୍ଲୀଂ ସ୍ୱାହା
ହେ ଭୃଗୁ ! ହେ ପରମ ବ୍ରାହ୍ମଣ !

ହେଇ ଦେଖ
ଅକୃତ କାର୍ପଣ୍ୟତା ସ୍କନ୍ଧେ ଉପଗତ
ଅକାବ୍ୟରେ ଗୀତ
ଉତ୍କୀର୍ଣ୍ଣ ବର୍ଣ୍ଣମାଳାରେ ଶବ୍ଦ ଘୋଷ
ଘଟ ଓ ଘଣ୍ଟର,
ଅଲଂଘ୍ୟ ଲଂଘନେ କ୍ଲୀବ
କୈବଲ୍ୟର ଦୁର୍ଲଂଘ୍ୟ ପରିଖା ।
ପ୍ରଗାଢ଼ ବିଚ୍ଛିନ୍ନତାର ଜାଲ ଘେରି ଅଛେ ଚତୁର୍ଦ୍ଦିଗେ
ଧରୁ ଆନ୍ତ୍ୟ ଧ୍ୱନି ଘ୍ରାଣ ସ୍ପର୍ଶ ସ୍ୱାଦ
ଫୁଙ୍କା ।
ନିଜ କଣ୍ଠ ସ୍ୱର
ହୋଇଯାଏ ଅନ୍ତର୍ଗତ ଦୁଃଖ ।

ଜାଗ କ୍ରୋଧ !
ମନ୍ତ୍ର ଲସିତ ଭୁଜଙ୍ଗ
ହେ ଆଗ୍ନେୟ ବାଗ୍ନେୟ ନିର୍ମାଣ !

ଅସହ୍ୟ ବେଦନା ମାଳ
ଅସଂଯତ ପ୍ରାଣ
ରୁଗ୍ଣ ଶ୍ୱାନ ସମ
କୁଣ୍ଡଳୀ ପ୍ରସୂତ
ନିଦ୍ରାତୁର ପ୍ରହର ପ୍ରହରେ ।
ହେ ଅପମାନିତ ।

ଫିଙ୍ଗ ପୂଜାର କସ୍ତୁରୀ, କୁଙ୍କୁମ, କର୍ପୂର
ଅନର୍ଥ ସୃଷ୍ଟିର ଶେଷେ ନିରର୍ଥ ନନ୍ଦିତ
ଅଥର୍ବ ଦାରୁ ଦେବତା
ମାଗେ ତୋର ବକ୍ଷଭେଦୀ
ରକ୍ତ ।
ହେ କ୍ରୋଧ !
ହେ ପରମ ବ୍ରାହ୍ମଣ !!



# ଡ୍ରାଗନ୍

(୧)

ସାଇରେନ୍ ଡାକ ଯଦି ହଏ
ସେମାନଙ୍କ ସାଇରେନ୍ ଡାକ ଯଦି ହଏ ମିଥ୍ୟା ଇସ୍ତାହାର
ସୀମାନ୍ତେ ଆହ୍ୱାନ ହଏ ଆଗ୍ନିକ କମାଣ
ଷ୍ଟେନ୍‌ଗନ୍ ବୋଝି ନେଇ ଟ୍ରକ୍
ରାଜ ରାସ୍ତା ଦେଇ ଛୁଟି ଆସେ,
ତୈବ୍ର ମାଦକ ଦ୍ରବ୍ୟରେ ସେମାନଙ୍କ ହାତର ସଫେଇ
ନାଗ ମୂର୍ଚ୍ଛେ ଅନ୍ଧ ହସ୍ତୀ କରେ
ସେମାନେ ସାମ୍‌ନାରେ ଆସି ଡାକ ଦେବା ଆଗୁଁ
ଆମେ ନା କି ଶବ ହୋଇଅଛୁଁ ?

(୨)

ଗୃହଆଡ଼େ ମୃତ୍ୟୁ ମୃତ୍ୟୁ ମୃତ୍ୟୁର ସମ୍ଭାର
ଟ୍ରେନ୍ ବସ୍ ବିସ୍ଫୋରକ ବିଷ ଗ୍ୟାସ୍ ରୁଦ୍ଧ ଶ୍ୱାସ ମୃତ୍ୟୁ ହନନର
ଦହନ ଦୁଃଶୀଳ ମୃତ୍ୟୁ ଭୂଷାପାତ ଅସ୍ତ୍ର ଉପରେ
ଆତ୍ମହାଣ୍ଟି ମୃତ୍ୟୁଶାନ୍ତ ସ୍ନାନ
ଶାନ୍ତିହୀନ କ୍ରୂର ଅପଘାତ
ଗଙ୍ଗା, ଶତଦ୍ରୁ, ବିପାସା, ବ୍ରହ୍ମପୁତ୍ର
ତରାଇ ଇସ୍ତକ୍ କନ୍ୟା କୁମାରୀକା ଯାଏ !

(୩)

ଅନ୍ଧ ଓ ଧୂସର ପଥ
ସାପର ସମ ମସୃଣ ଲୌହ ପଥ
ସେତୁ ସେତୁ ପଥ

ଘରେ ଝୁଙ୍କି ପଡ଼େ
ଶୂନ୍ୟ ବନ
କାଲସ୍ତ ଓ କୁଠାରେ
ଆଗ୍ନେୟାସ୍ତ୍ରର ହିଂସ୍ରତା
ଶିଙ୍ଗ ମୂଲ୍ୟେ ନିଃସଙ୍ଗ ଗଣ୍ଡାର
ଚର୍ମ ମୂଲ୍ୟେ ତଳପଡ଼େ
ଅଜେୟ ଶାର୍ଦ୍ଦୂଳ ।
ସ୍ତବକହୀନ ଉଲଙ୍ଗ ଶାଳବଥି
ପଳାଶ ଦୁରନ୍ତ ଅଗ୍ନି କ୍ରୋଧ ସମ
ଦିଗନ୍ତ ବିସ୍ତାରୀ
ରକ୍ତ ଧୂମ ହା ହା ହା ହା ଉଂଗ୍ରୁଳ ପାହାଡ଼
ମୃତ୍ୟୁର ସ୍ୱୀକାର ପତ୍ର
ପ୍ରାଚୀରର ପତ୍ର ସମ
ଶର ବିଦ୍ଧ ହଂସ ପରସମ
ଇତସ୍ତତଃ ଉଡ଼ିଯାଏ
ହିଂସ୍ର
ରକ୍ତସ୍ନାତ
କ୍ରୂର ଅନ୍ଧ କ୍ଷମତାର
ହତ୍ୟାର ଉତ୍ସବେ ।

( ୪ )

ବହୁ କାର୍ଯ୍ୟଥିଲା
ପରିକଳ୍ପନା ବି ଥିଲା
ଦଧୀଚି ଅସ୍ଥିରେ ବଜ୍ର ପଞ୍ଜର ନିର୍ମାଣ
ସମୁଦ୍ର ମନ୍ଥନ ଦୃଢ ପର୍ଯ୍ୟାୟରେ
ଅମୃତ ନିର୍ଯ୍ୟାସ
ଅନାୟାସ
ନକ୍ଷତ୍ରର ଯାନ

ଆତ୍ମା
ମାଟିର ଉତ୍ତାଳେ ଗର୍ଭଧାନ
ବୀଜମନ୍ତ୍ର ସ୍ତବ୍ଧ ହୋଇଯାଏ
ହାଓ୍ୱାରେ ହାଓ୍ୱାରେ
            ଆର୍ତ୍ତସ୍ୱର
ଦଗ୍ଧ କ୍ଷେତ
ଦଗ୍ଧ ଗର୍ଭିଣୀ ନାରୀର
ଅଶ୍ରୁଶ୍ଳେଷ ଗୀତ ।

( ୫ )

ତଥାପି ସକାଳ ଘଣ୍ଟା
            ଯନ୍ତ୍ର ବାଜଉଠେ
ଚୁଲ୍ଲୀ ବହ୍ନି ପରେ ଉଡ଼େ
            ଇସ୍ପାତ ରେଣୁକା
ବନ୍ଦରରେ ଦେଖାଦିଏ
            ଅନାଜ୍ ବାହୀ
            ଜାହାଜୀ ମାସ୍ତୁଲ୍
ରକ୍ତେ ଜାଗେ ବଷାକ୍ତ ଓ୍ୱାଗନ୍ !
ମୃତ୍ୟୁ ସ୍ପର୍ଶ ଏଡ଼ି
            ହିମ ଜଳବନ୍ଦୁ ସମ
            ବୁକେ ନେଇ ଅଣୁ ସୂର୍ଯ୍ୟଶିଖା
ଇଚ୍ଛା ହୁଏ
            ପ୍ଲାବନେ ସଂକ୍ଷୋଭେ
ଏବଂ ଅନବାର୍ଯ୍ୟ ଡାକ ସେ ମରଣ ବାହ୍ୱମାରେ
ଶତାବ୍ଦ ପ୍ରଶାନ୍ତି ଉଲ୍ଲାସେ !

( ୬ )

ତାଙ୍କର ଡେଣାର ଝଡ଼

ଏ ଡେଣାରେ ମୋର

ତାଙ୍କର ଉଡ୍ଡୀନ ବେଗ

ଗଡ଼ରେ ପ୍ରସ୍ଥାଣ

ମୋହର ଆକାଶ ଘାଟେ

ସମାଧି ପ୍ରହର କାଟି

ଉଠେଁ ତେଣୁ ଅଗ୍ନିଶିଳ୍ପ

ମୁହିଁ ନବସ୍ୱାନ ।

—o—

# ଦୁଇଟି ନିର୍ଜନ ମତ୍ସ୍ୟ

ପ୍ରଥମ ବନ୍ୟାର

ରୋମଶ ନାଭିତଳେ ଜଳଶସ୍ୟର
ପ୍ରଥମ ଫସଲ
ଆମେ ଦୁଇଟି ନିର୍ଜନ ମତ୍ସ୍ୟ
ତୁମେ ଜ୍ୟୋତ୍ସ୍ନା ବର୍ଣ୍ଣର
ଆଉ
ଶିଉଳୀର ସମାରୋହରେ
ମୁଁ ନୀଳ ଶ୍ୟାମଳ ।
ଇଚ୍ଛାମତୀ ନଦୀ ଦ୍ୱାତ୍ରିଂଶ ମାଇଲ୍‌ର କଲ୍ୟାଣ ।

ରକ୍ତେ ମୋର ବଜ୍ର
ରକ୍ତେ ତୁମର ବିଦ୍ୟୁତ୍
ଆମର ମିଥୁନ ମୁଦ୍ରା
ଯୁଗଳ ବନ୍ଦୀର ସିମ୍ଫନି
ସନ୍ତରଣରେ ସନ୍ତରଣରେ ଜଳଜ ସମାରୋହର ବନ୍ୟତା—
ହଠାତ୍ ଜାଲର ଭଉଁରୀ
ପରିଧି
ବୃତ୍ତ
ବ୍ୟୂହ
ନୀଳ ଶୂନ୍ୟତା ।

ଭଙ୍ଗା ଆରସୀ ପରି ଆକାଶ
କାଚ କଣ୍ଟା ହୀରା ପରି ସୂର୍ଯ୍ୟ ।
ଜଳ ଶୂନ୍ୟ ବାୟୁ ଶୂନ୍ୟ ଆଦିମ ସ୍ତବ୍ଧତା-କ୍ରମଶଃ

ରୁଦ୍ର, କ୍ରମଶଃ -
ଶୁଭ୍ର
ଶାନ୍ତ ।

ଉପ୍ତ ବିଲେପିତ
ଅମର ଶବ
ଘାଇ ରସୁଣର ଗନ୍ଧ
ଗୃହିଣୀର ଅଧରତଳେ ସ୍ମିତ
ଗୃହସ୍ଥ ବାହୁର ଆଲିଙ୍ଗନ
ଆହୁରି ନିବିଡ଼ ।

ପ୍ରଥମ ବନ୍ୟାର
ପ୍ରେମଶ ନାଭିତଳେ ଜଳଶସ୍ୟର
ପ୍ରଥମ ଫସଲ
ଆମେ ଦୁଇଟି ନିର୍ଜନ ମନୁଷ୍ୟ

ତୁମେ ଜ୍ୟୋତ୍ସ୍ନା ବର୍ଣ୍ଣର
ଆଉ
ବିଜୁଳୀର ସମାରୋହରେ
ମୁଁ ମାଳ ଶ୍ୟାମଳ

ଇଚ୍ଛାମତୀ ନଦୀ ଦ୍ୱାତ୍ରିଂଶ ମାଇଲ୍ ର କଲ୍ୟାଣ !

—o—

# ବିମାନରୁ ଜଳଧାର ଭୂତ

ଜଳ ନକ୍ସା
ଭୂମି ଶାଦ୍ୱଳିମା ଗୈରିକ ।
ମେଘ
ବାଟିକ୍ ପ୍ରିଣ୍ଟ୍‌ର ବାଘଛାଲ ।
ବାଷ୍ପମାନ ଫେନୋଜ୍ଜ୍ୱଳ ବିମାନ ବଳାସେ
ଧୂମ୍ରବାଟେ ରହି ରହି ବାଜେ
ମିତାଲୀ ଘୁଂଘୁର ।

ତୃଷ୍ଣା ତୃଷ୍ଣା
ଲେଡ଼ା କଡ଼ା ଭିନ୍‌ଦେଶୀ ପାନୀୟ !
ଜଳ
ଜଳ ଶାର୍ଦ୍ଦୂଳ ସରବ
ଅଜଗର ଗର୍ତ୍ତ ବିପନ୍ନତା
ଭସି ଯାଏ କଡ଼କାଠ ବର୍ଗା ଇନ୍ତଜାମ୍
ଗୃହର ଜ୍ୟାମିତି
କାଷ୍ଠ ଶବ
ସାଲିସ୍ ପାଇଁ ରାଜି ନୁହେଁ ଏ ସାରଙ୍ଗ ମନ ।
ଛିନ୍ନ ମୂଳ ବୃକ୍ଷ ଊର୍ଦ୍ଧ୍ୱ ଚେର
ଅସ୍ତାଭ ସୂର୍ଯ୍ୟ ସଙ୍ଗମେ
କାଞ୍ଚନ କୁଳୀନ ।
ଜଳ ରୁଦ୍ର ବିଷାଦମୀ ନଦୀ ।
ତାରବାଧି ମାର୍ଗେ ଉଡ଼ିଆସେ
ବିମାନୀ ପ୍ରତିଶ୍ରୁତିର
କଷ୍ଟ କଷ୍ଟ ଅକାଶୀ ସ୍ଥିତିଧୀ.

ଅନାଜ୍ ବଣ୍ଟନ କାର୍ଯ୍ୟ ସଂସ୍ଥା
ନଗରପତ୍ତା ବିଦ୍ୟୁତ୍ ବ୍ୟବସ୍ଥା
ବନ୍ୟା ବାର୍ଷିକୀ ।
ସ୍ୱାଭାବିକ ବିଶ୍ରାମର ପର୍ଯ୍ୟାୟେ ପର୍ଯ୍ୟାୟେ
ଦୈନିକ ଉତ୍ସବେ
ବିମାନ ବିଳାସ ଭୂତ ହୋଇ ଫେରିଆସେ
ଗାର୍ହସ୍ଥ୍ୟର
ମଗ୍ନ ଗ୍ରାମ କୃଷିପାଳ ଭୂତ
ଅକସ୍ମାତ ଶିଳା ପଡ଼େ
ଭାଙ୍ଗିଯାଏ ଦରଜାର ଶିଶ୍
ପ୍ଲେଟ୍ କଣ୍ଟା ଉଡ଼େ ଇତସ୍ତତଃ
ନାଚେ ମୁର୍ଗାର ହାଡ଼
ଇଡ଼ିଯାଏ ବବୁର୍ଚ୍ଚିର ଫ୍ରେ'ରୁ ବ୍ଲଡ଼ମେଷ୍ଟ
କୁର୍ସି ଉଠେ ।
ନବ ଭାଙ୍ଗେ ରାସ୍ତାକଡ଼େ
ଦେଖେଁ
ନିଜ ନଗ୍ନ ପଦ
ପୁରୁଣା ଜାମା ପକେଟେ
ଶୂନ୍ୟ ଦୁଇହାତ ।

—o—

# ବଡ଼ ଅସମୟ

ବଡ଼ ଅସମୟ
ନିଷ୍ପତ୍ର ବୃକ୍ଷର ଫାଇଲ୍
ଦୁତଆର୍ ଦାଖଲ ପରେ ଅନ୍ତଶ୍ୱଣ ବନ୍ଦୀ
                    ସଚର୍ଜଣ୍ଣ ପରି

ଅସହ୍ୟ ଉଷ୍ଣତା
ପାର୍ଶ୍ୱ ବର୍ତ୍ତିକା ମଧ୍ୟାହ୍ନ
ବିଷଣ୍ଣ ଧୂସର ।
ତୀକ୍ଷ୍ଣ ଦନ୍ତ ପ୍ରସ୍ତରରେ ରୌଦ୍ର
ସ୍ୱପ୍ନାହ୍ୱାନ ।
ସ୍ୱପ୍ନ
ସ୍ୱପ୍ନର ସ୍ମୃତି ପାଲଟେ ପିତୁଳା ନଟଶ୍ୱ
ଦୂରବର୍ତ୍ତୀ ଧଣ୍ଟାତରେ ବହୁବିଧ ମାଧ୍ୱାବୀ ଉଦ୍ୟାନ
ପବିସପ୍ରାର୍ଥନା, ସୁରେ
ବାଜେ ଜୀବନର ମିଶ୍ରରାଗ
                    ଲଳିତ ଭୂପାଳୀ ।

ମୁଖସବୁ ପ୍ରଜାପତି
ପରାଗଧୂସର
ମଧୁଗନ୍ଧୀ ମୁଖ
ଉଡ଼ିଯାଏ ଉଡ଼ିଯାଏ ଉଡ଼ି ଉଡ଼ି ଯାଏ
ଦଶ ବିଂଶ ତ୍ରିଂଶ ଅର୍ବୁଦ ଅଜସ୍ର
ଲାଲ ମେରୁନ୍ ବାଇଗଣୀ ହଳଦୀ ଖଇରୀ
                    କସମ୍ କସମ୍ !

ରୌଦ୍ର ରୌଦ୍ର
ସୂର୍ଯ୍ୟର ଚାବୁକ୍ ବାଜେ
ଅଚିବ ପ୍ରତ୍ୟାଶା ନେଇ
ବସିରହେଁ
ନିର୍ବାକ୍ ବେକୁବ୍ ।
ନବତମ ଭଙ୍ଗିମାରେ ନତ ଅପରାହ୍ଣ
ସ୍ପ୍ରିତସମ
କମଳା କୋମଳ ଖରା
ପ୍ରେମସମ
ପ୍ରେମ—ଅନ୍ୟତର ଆଙ୍ଗର ରୁଗ୍ଣ ଈର୍ଷା ?
ଶୈଶକ ଗୋଧୂଳି
ବୈରାଗିଣୀ
ବିରକ୍ତ ବିସ୍ମୃତି ପାଇଁ ନେଇଆସେ
ସମ୍ଭାବିତ ଶବ ।



# ପାପଘ୍ନ ମନ୍ତ୍ର

ପ୍ଲାଟ୍‌ଫର୍ମ ବହୁ ଦୂରେ ଟ୍ରେନ୍ ନାଭିଶ୍ୱାସ
ଅନିଚ୍ଛୁକ ନୟନ ନିସୀମା

ଫେରିଆସେ
ବୈରାଗୀ ବିବେକ ।

ସୌଜନ୍ୟ ସନ୍ଦର୍ଭ ହାତ ଉତ୍ତୋଳିତ ହେବା ଆଗୁ
ଶୂନ୍ୟତାରେ
ସୂର୍ଯ୍ୟଜିଏଁ
ରଞ୍ଜିମା ମେଘର ସ୍ତୂପେ ଆଲୋକ ଗୁଞ୍ଜନ—
ରକ୍ତାକ୍ତ ଭୂମିକା ନେଇ ଏ ପ୍ରଜନ୍ମ

ପରୀକ୍ଷା ଯନ୍ତ୍ରଣା

ଶପଥର ସତ୍ତ୍ୱ
ସଂକ୍ରମିତ ପ୍ରାଗୈତିହାସିକ ଶଂରସା

ଭଙ୍ଗି ଚୂର୍ଣ୍ଣ କରିବାର
ପ୍ରତିଷ୍ଠିତ ଜିଦ୍ ।

ଲତାଳତା ଊର୍ଦ୍ଧ୍ୱ ପଥ ପ୍ରଦକ୍ଷିଣ ସୂର୍ଯ୍ୟକେରୁ

ନଗ୍ନପଦ ଭିଖାରୀର ହସ୍ତକୁଶ ବଟୁ

ଘୃତସ୍ଥିତ ଗଣ୍ୟମାନ୍ୟ ଦ୍ରୁତଚଳ ଯାନ
ନଗରୀ ପ୍ରସାଦ କ୍ଳନ୍ତ
କ୍ଷଣସ୍ରାବୀ ଶିଳ୍ପ ବାକ୍ କାକ

ଶ୍ଳୈଥିକ ଖାଞ୍ଜିର

ନଖର ଅଙ୍ଗୁଳି ଦାଗ
କ୍ଷୁଧିତ ମଧ୍ୟାହ୍ନ

ବ୍ୟଞ୍ଜନ ବର୍ଣ୍ଣର ସୂର୍ଯ୍ୟ ଶୂଦ୍ର ଓ ପାଠଳୀ ।
ଅପରାହ୍ନ ନଦୀସମ ନାବ୍ୟତାର ଖୋଜେ
ଅସୁମାର ଲୋକ
ଅପର୍ଯ୍ୟାପ୍ତ ବ୍ୟସ୍ତତା ଓ ଭିଡ଼,
                    ପ୍ରତ୍ୟୟର ଡମ୍ବୁଦ୍ୱାଣୀ ହଜେ ।
ଗୃହଆଡ଼େ ଖାଲି ଗୃହସ୍ଥାଳୀ ବର୍ଣ୍ଣମାଳା
ମୂଲ୍ୟହୀନ ଶପଥ—ପଥର
                    ନକ୍ସା ମିଳେ ନାହିଁ ।
ଘୃତଦୀପ ପବିତ୍ରତା ବ୍ୟାହତ
                    ଗୋଧୂଳି
ସ୍ଖଳିତ ପାପ ସ୍ୱବର୍ଣ୍ଣ
                    ମୈଥୁନ ଅନ୍ଧାରେ
ଆତ୍ମଦ୍ରଷ୍ଟା ବୀତସ୍ପୃହ ଗୈରିକ ଚୀବରଧାରୀ
                    ବୌଦ୍ଧ ଭିକ୍ଷୁସମ
ସଂସାରେ ଅବସର ଲଜ୍ଜାସ୍ନାନ ତାର
ପାପଘ୍ନ ମନ୍ତ୍ରର ଘଣ୍ଟା ବାଜେ ।



# ତୁମ ବଶମ୍ବଦ--ହେମନ୍ତ !

ଅଲଖିତ ସର୍ବସ୍ୱ ସ୍ୱସାବ-
ବକ୍ଷ ମସୃଣତା
କଣ୍ଟୁଠା ଅସ୍ଥି ଭୁ ନେଇ ଭାସି ଆସେ
ନିର୍ଦ୍ଧାରିତ ସମୟର ସୁଖ
ସାଂପ୍ରତିକ ଶବ୍ଦର ଶଯ୍ୟାରେ ।

ବୀଜର ବାହକ ଛନ୍ଦ
ଆଗାମୀର ବୃକ୍ଷର ପ୍ରତ୍ୟାଶା
ବାୟୁ ସ୍ତରର ଭାସି ଚଳେ ଇତସ୍ତତଃ
ସମସ୍ତ ଅଳିନ୍ଦେ ଘଡ଼େ ଗୋଧୂଳିର ସ୍ପୃହା
ପଶ୍ଚାତରେ ପଥ ବନ୍ଦ
ଦୁର୍ଭେଦ୍ୟ ଦେଆଲ !

ହେମନ୍ତ ! ନାହିଁ ଆଉ ଶବରୀ ପ୍ରତିକ୍ଷା ଇପ୍‌ସା
ଈଷଦୁଷ୍ଣ ଦିନ
ଅରଣ୍ୟ ଲୋହିତ ପତ୍ର କୃତ୍ତିକା ଶୂନ୍ୟତା
ମୃତପ୍ରାୟ ନିର୍ଜନ ମଲଙ୍ଗ ।

ତୁମପରି ଶ୍ରମୀହାତ ଫସଲର ସଦ୍ୟପକ୍ୱ ପ୍ରାଣ
ସାବ୍ ରାତି ଜନଶ୍ରୁ ମୁଁ ତୁମେ
ନୂତନ ସଫେଦ୍ ବସ୍ତ୍ର ଢାଙ୍କି ଦେଇ ତୁମର ନଗ୍ନତା
ଏକକତ୍ୱେ ବଢ଼ାଏ ମୁଁ ଷଯ୍ୟୁ ସ୍ପୃଷ୍ଟ ପ୍ରହର
ସୂର୍ଯ୍ୟ ପ୍ରତୀକ୍ଷାରେ ବାଜେ ନକ୍ଷତ୍ର ନୂପୁର
ସମର୍ପିତ ସ୍ପନ୍ଦନର ସୁନ୍ଦର ସଂକେତେ
ହେମନ୍ତ ଗୋ, ବଲ୍ଲଖି ହେମନ୍ତ ! !

—o—

# ଏସିଆର ଶେଷ ସନ୍ଧ୍ୟାର୍

ସମ୍ମୁଖରେ ସର୍ବନାଶ ଏସିଆର ଶେଷ
ଗିରି ବର୍ଣ୍ଣା କଣ୍ଠ କଣ୍ଠୀ
ତଟିନୀ ମେଖଳା ମାଳା
ଧାନ୍ୟଗନ୍ଧୀ ଭୂମି ବାସ୍ମଞ୍ଚ ।
ଖଡ୍ଗା ରଥ୍ ଘୋଡ଼ା !
ଗାଥାବଳୀ ସିନ୍ଧୁର ତନୟା
ଅଗ୍ରେ ମେଧାବନ୍ତ
ତାମ୍ର ଅବୟବ ଜାଳେ
କଞ୍ଚିତ ମାଳାଭ୍ର ।
ନଜର୍ ଖର୍ଯ୍ୟକ୍
ଓଷ୍ଠେ ମୁକ୍ତା ବାଜ ।
ପ୍ରେମ ସମ ଘାସ
ବାୟୁ ସଯାବନ୍ତ ।
ତୁଫାନ ସନ୍ଧ୍ୟାବାର୍ !
ଭୁଲିଗଲୁ କକେସସ୍
ବୃଷସ୍କନ୍ଧ ସୂର୍ଯ୍ୟରେଡ
ଷ୍ଟିଲ୍ ମାଳ କାସ୍ପିୟାନ୍
ଲବଣ ସାଗର
ନନ୍ଦନର ସମ ଗାଭ୍ରି
ସ୍ତନଭାରେ ମନ୍ଥର ଅଳସୀ
ଅନ୍ତର୍ହୀନ ବାଲୁକାରେ

କୁବ୍ଜ ପୃଷ୍ଠ ଉଷ୍ଟ୍ରର ଝଗନ୍ତ
ଅପର୍ଯ୍ୟାପ୍ତ ଅନାଜ୍ ।

ହୁସିଆର୍ !

ହିରଣ୍ୟଗର୍ଭ ଏ ସୈନ୍ଧବନୀ
ମାଗେ ତୋ ଉତ୍କ୍ଷିପ୍ତ ଲହୁ ଅଗ୍ନିର ପ୍ରବାହ !

କୁହୁକନୀ ଏ ନଦୀମାତୃକ
ସିନ୍ଧୁର ତ୍ରିକୋଣ ଭୂମି
ହୁସିଆର
ତୁଫାନୀ ସଓ୍ୱାର୍ ।



# ପ୍ରାକ୍ତନ ଗର୍ଦ୍ଦଭ

ଗୃହଁ ଗୃହଁ
ଦନ୍ତର ପ୍ରତିଶ୍ରୁ ସବୁ ନଷ୍ଟ ପଦ୍ଧତି
ବ୍ୟାଘ୍ରରଏ ବରଂ ଧରି ନିଅ
ବଜ୍ରଗର୍ଭ ନିର୍ମେଘ ବିଦ୍ୟୁତ୍ ।

ସୁବର୍ଣ୍ଣ କଳସ ଲୋଭେ
ଆପଣାର ଲଙ୍କା ସୂତ୍ରେ ଏକାନ୍ତ ଭୌମିକ
ସେ ଚମକ୍ ପ୍ରତିବିମ୍ବ ଧରି
କରେଁ ମୋ ମୁଖ ବ୍ୟାଦାନ-ହସ୍ତୀମୂର୍ଖ
ଏ ପ୍ରଜନ୍ମେ
ସଦ୍ୱଓ ମୁଁ ପ୍ରବାଦ ପୁରୁଷ ।

ଗୃହଆଡ଼େ ସଂଘବଦ୍ଧ କୁତ୍ତାଙ୍କୁ ଶିଆଳ
ଚକିତ ଚିତ୍କାର,
ଭୋଜ ଉତ୍ସବେ ଉଚ୍ଛିଷ୍ଟ
ଖଣ୍ଡେମାନ ହାଡ଼ ହିଁ ଯଥେଷ୍ଟ ।

ଜ୍ୟୋତ୍ସ୍ନାସମ ନାରୀସବୁଁ
କାଞ୍ଚନ କୌଳିନ୍ୟ
କଦଳୀ ଦଳିତ ଉରୁ
ନାରୀବରଣରେ ଅତ୍ୟଧିକ ଲାଭାତୁର ।

ଆଣ ଆଣ ଭାଷଯନ୍ତ୍ର
ଶଙ୍ଖ ଶବ୍ଦେ ଗାନ ଗାଏଁ-ପ୍ରାକ୍ତନ ଗର୍ଦ୍ଦଭ !
ଜରାସନ୍ଧ ସିଂହଦ୍ୱାରେ ଜନବନ୍ଧ ଘଣ୍ଟ !



# ଦଉଡ଼ି ଶାଗୁଣା-ପରସ୍ପର

ମନେ ପଡ଼େ ?

କଣ ?

ଆମର ମାଡ଼

ଶରବଣ !

ମନେପଡ଼େ ।

ଆଉ ସେ ମୁହର

ସ୍ଲେଟ ନକ୍ସ

କଜ୍ଜଳ ଦେଲ୍ଲ ନୁଆପର

କଥାରେ ଫୁଟଇ ଯାର ଖଇ,

ବର୍ଷାରେ ଖାଲ

ମୁଁହଁଟି ଫୁଲ୍ଲଇ

ସିଏ ବଢ଼େ ?

ମନେପଡ଼େ ।

ତାର କୂଳେ ସେଇ

ସ୍ଲେଟ ଗାଆଁ

ରକଟେ ରହିଛି

ଯାର ନାଆଁ

ଧୂଆ ବାସମଣ୍ଡି ଝୁଉଳରେ

ଧୋବ ହାତ

ଚୂଲେ ଉଠେ ଧୂଆଁ

ଚୂଲିର ନଆଁରେ

ଫୁଟେ ଭାତ୍।

ପ୍ରତିମାର ପର
ବଧୂଟିଏ ଛୁଡ଼ା
'ବାଡ଼ କଡ଼େ ?
ମନେପଡ଼େ ।
ଚଣ୍ଡୀର ଏକ ଶିଙ୍ଗ କ
ପାହାଡ଼ଟା
ହାତୀଦାନ୍ତର କଟାଖି ବା
ଚନ୍ଦ୍ରଟା
ଉଡ଼ ଯାଉଥିଲେ ଆମେଦୁହେଁ
ଚୁଂବନ ଲଗି ଆଗେଇବା ଓଠ
ଯୋଡ଼ପର
କେବେ ଝଡ଼େ ?
ହଁ ମନେପଡ଼େ ।
ନାଇଁ ନାଇଁ ସେଇ
ଶରବଣ
ହେଲ କ'ଣ ?
ନକ୍ଷତ୍ରର ନାଇଁ ବ
ସୁଅଧାର
ବାଲି ଓ ପଥର
ଅଗଣନ ।
ସେଇ ଆଡ଼ ଦେଖ
ନାଳ ପଥ
ଖଣି ଗାତ ଫଟା
ପରବତ
ଟାଁର ମଣିଷ
କ୍ଷେତ ଗୁଡ଼
ମାଗିଯାଏ ଛେଣେ
ବରତନ ।
ହେଲ କ'ଣ !
ଗଂଜଣା ଦେଇ
ଶାସ୍ତି କରଛୁ
ମୁହଁ ଭାର

ଗହଣା ଦେଇ ନ ବୋହୂଟିରେ
ବାପଘର
ଘରେ ନାହିଁ ଲୁଣ
ନାହିଁ ଚାଉଳ
ଖାଡ଼ୀରେ ତାଳ ଟା
କଉପିନ
ବୋହୂଟି କଲ୍କ
ଅଘଟଣ !
ଏ ମା କଲ୍ କଣ ?
ଦେଖୁନା ପିଆଜେ
ସଉଧ
ଆକାଶ ହେଲ୍ ଛୁଆଁ
ବଢ଼ାଏ ମିଶିଛୁ
ବିଷ ଧୂଆଁ
ସହର ବାହାରେ
ତରୁଣ ତରୁଣୀ
ଦଳ ଶବ
ଶିଆଳର ଆଜ
ଆମର ବ
ଭୋଜ ଉତ୍ସବ !
ପୁରୁଖା ଦେଉଳ ନଶୂନ
ଦେବତା ପୂଜାପାଇଁ
କେହ୍ବ ନାହିଁ କେହ୍ବ ଆସେ ନାହିଁ,
ବାଧି ନଉତ୍ତରେ ଯାପିବା ସବି
ସାଗ୍ଭକ୍ଷଣ !
ନାହିଁ ନଈ ?
ନାହିଁ ମାଡ଼ ? ?
ନାହିଁ ଶରବଣ ? ? ?

—୦—

# ବିଷ ମାଟେଗଁ-କନ୍ୟା !

ନଈ ସେଇ ପାରେ ନା କି
ପ୍ରିୟତମ ଗ୍ରାମ :
ପୁଷ୍ପ ଦୃଶ୍ୟ ବୃକ୍ଷ ସ୍ମିତଶୀଳ
ଜହ୍ନସମ
ଶାଳ-ପ୍ରାଂଶୁ ସୁଗନ୍ଧ ଯୁବକ,
ଲଙ୍ଗଳ ଫଳାରେ ଉଠି ଆସେ ସ୍ୱର୍ଣ୍ଣବୀଜ
ସ୍ନିଗ୍ଧ ରନ୍ଧନର ଘର ଚୁଲି ବହ୍ନି ତାପ
ବ୍ୟଞ୍ଜନର ଘ୍ରାଣେ ବ୍ୟଗ୍ର ବାୟୁ ମଦାଳସ !
ବିପୁଳ ବିଭବ ମାୟା !
ଏ ତଟର କନ୍ୟା
ମନେ ବନ୍ୟା
ଛବି ତହିଁ ସତ୍ୟ ହୋଇ ନା କି ଇନ୍ଦ୍ରଧନୁ ସମ
ଧରିତ୍ରୀ ଛୁଇଁଛି ।
ନଈରେ ମଗର
ଓଲଟ କଳସୀ ଭରେ ସନ୍ତରଣ
ଭରସା ପାଏ ନା ।
ରେଶ୍ମୀ ଚୂଡ଼ି ବିପଟ ବେଣୀ ଫିତା
ସୁନେଲି ଇଆରିଂ
ବାସନ୍ତୀ ରଙ୍ଗର ସାୟା
ଦୂରଦର୍ଶନର
ପୂର୍ବାହ୍ନ ଅଳସ
ଅର୍ଦ୍ଧ ରବିବାର ସନ୍ଧ୍ୟାର ସିନେମା…

ବସ୍ତୁଃ ହନ୍ଧ ଘୂର୍ଣ୍ଣି ସ୍ୱପ୍ନ
କଳ୍ପନାର ମିନାକରା ଦର୍ପଣରେ ଛୁଇକା ଛୁଇକା—
କେଉଁ କେତକୀର ଝରେ
ଗୀତ ଗାଏ ରୂପସୀ କନ୍ୟା !
ସେପାରେ କୁକୁର ଭୁକେ
ଏଇପାରେ ଘଣ୍ଟେ ପ୍ରତିଧ୍ୱନି
ପମ୍ପାରର ସମ ଅମ୍ଳମାଳ ।

ଏପାଖେ ପୋଖରୀ ହୁଡ଼ା ଗୁଳ୍ମରେ ଶଙ୍କିତ
ଧର୍ଷଣର ଭୂତ
ପଥ ନିତାନ୍ତ ରକ୍ତିଳ
ନଗ୍ନ ସ୍ରୋତ ଧ୍ୱଂସ ବଢ଼ି
ମୃତ୍ୟୁର ଚଉଁରୀ ।
ସେଇ ପାଖେ କରେସିନ୍
ଦଉଡ଼ିର ଫାଶ
ତରଳ ଏନ୍ଡ୍ରେକ୍ସ୍
ରେଳ ତଳ ବେଦାନ୍ତ୍ୟ-
ଟିଟା ଛିଁ ସ୍ୱର୍ଗ ପାହାଚ-ସଙ୍ଗ ।
ଅଭିସମ୍ପାତର ବୋଝ ଶିରେ ନେଇ
ତୁ ବି ହେଉ କବିର ନାୟିକା ?
ତୋର ପାଇଁ ମୂକ ମୂଢ଼ ନିରୁପାୟ ନିର୍ବୋଧ ମୁଁ
ବିଷ ମାଗେ କନ୍ୟା ! ମାଗେ ବିଷ ! !



# ଗୃଧ୍ରିଣୀ

ଜର ପରି ଜ୍ୟୋସ୍ନା—କେତେ କିଲୋମିଟର
ଶାରଦ ସ୍ୱଚ୍ଛତା
ଫସଲ ଅଯୋଗ୍ୟ ଭୂମି
କଙ୍କର ଓ ବଣତୁଳସୀର,
ନିକଟ ବଟର
ଓହ୍ଲଳରେ ଶବ
ବେନାମୀ ଫୁଲ ସବୁର ମଦ ବାସ୍ନା
ବିରକ୍ତ ମିଶ୍ରଣ
ଗୃଧ୍ରିଣୀର ଚକ୍ଷେ ନିଦ ନାହିଁ !
ଶୃଗାଳ ପ୍ରହର ଘୋଷ
କ୍ଷିତିଜରେ ଡାଆଣୀ ଆଲୁଅ
ଅର୍ଦ୍ଧ ସ୍ୱପ୍ନ ବୋଧେ

ମଧ୍ୟ ଏସିଆର ଅଧିତ୍ୟକା—
ସ୍ୱଳ୍ପ ତୃଣାକୀର୍ଣ୍ଣ ଚଟାଣରେ
ବାଇସନ୍ ଗୋଷ୍ଠ
ଦ୍ୱନ୍ଦ୍ୱଯୁଦ୍ଧେ ଟଳିଗଲେ ବିରାଟ ସିଂହାଳ
ଗୃଧ୍ନିମା ଚଞ୍ଚୁ ବାରିଛି ତାର ଶୌର୍ଯ୍ୟ ସ୍ୱାଦ
ଆଫ୍ରିକାର ହସ୍ତୀ ଯୂଥ ଶ୍ମଶାନରେ
ଦନ୍ତରୁଚି ଧବଳ ପ୍ରାଙ୍ଗଣେ
ଗୃଖିଅଛି ଶୁଭ୍ର ଗଜ ମୋତି—
ଆଟ୍ଲାଣ୍ଟିକ୍ ଅଗ୍ନ୍ୟୁତ୍ପାତି ଦ୍ୱୀପ ଉପକୂଳେ
ତିମିର ହୃତ୍‌କଣା

ଭୁନ୍ଦ୍ରାର ବଲ୍‌ଗା ହରଣ ଯୌଥ ସଂଗ୍ରାମ
ଶେଷ ତୁଷାର ଆସ୍ତରଣରେ
ସେ ସାରନ୍ତି ଶୋଣିତ ପାରଣା !
ଓଡ଼ିଶାର ଏଇ ଗ୍ରାମ
ନଗ୍ନ
ଅନ୍ନଦୁଃଖୀ
ବନ୍ୟ ଓ ଶ୍ୱାପଦ୍‌ ଯୁକ—
ଏ ତାର କବର ଶବ
ଆତ୍ମହତ୍ୟା—ନା—ହତ୍ୟା ପ୍ରଶ୍ନେ ଜନତ
ବଧୂ ତାର ଶଯ୍ୟାଗତ ଜାର ପୁରୁଷର
ଗୃହ ଭୂସଂପତ୍ତି ହସ୍ତାନ୍ତର
କର୍ମ କ୍ଷେତ୍ରେ ନୂତନ ନିଯୁକ୍ତ
ଇତର ଶୋକସଭାରେ ସର୍ବସମ୍ମତିରେ
ଗୃହୀତ ପ୍ରସ୍ତାବ—
ସମାଧାନ—ସବୁଇର ଇତି ।

ଏ ଶବର ହୃତ୍‌ପିଣ୍ଡେ ଅରୁଚ ଗୃଧ୍ରିଣୀର
ତା'ର ମଧ୍ୟେ ଅନ୍ୟତମ
ମଳୟର—ଇନ୍ଦ୍ରଧନୁ ବର୍ଷୁକ ମେଘର
ପ୍ରିୟତମା କଳ୍ପନାର—ସବୁ ବାଜେ
ବନ୍ଧ୍ୟା କବିତାର
ନିତାନ୍ତ ଅଶୁଚ ।

—※—

# ଆରତ୍ତ ବରତ୍ତ ପାପା

ଦ୍ୱିବର ମୃଗଶିଳାରେ ନାଭିଗନ୍ଧ ଘ୍ରାଣ
ଶାଳଆପତନୀ
କ୍ଳାନ୍ତସମ ଇଚ୍ଛାବୃତ ରୌଦ୍ରେ ନିଦ୍ରାଗତ
କାଳ ମୃଗସ୍ନାର ବିପନ୍ନତା ଅଗ୍ନିସମ-ବନେ ।
ଧନୁର୍ବିଦ୍ୟା ପାରଦର୍ଶୀ ବ୍ୟାଧ
ତଥାପି ଏ ଅପରାହ୍ଣ ପ୍ରେମ—ନିରବଧି ନଦୀ
ବିନିଦ୍ର ଗଳ୍ପର ସମ ଦ୍ୱାଓ୍ୱା
ଝରାପତ୍ରର ସ୍ୱପ୍ନାବର୍ତ୍ତ- ମୂର୍ଚ୍ଛି ମୁହୂର୍ତ୍ତ ଏ ।

ଚତୁର୍ଦ୍ଦିଗେ ଅନନ୍ତ ମୃଗସ୍ନା
ପ୍ରେତ ତରୁଣୀର ପଣ୍ୟେ ଅଜସ୍ର ବୃକ୍ଷରେ ଝରେ ଫୁଲ
ବାଳକା କୋକିଳ ମାତୃ-ଆରୋହଣୀ
କଳ୍ପନାର ସ୍ୱର୍ଗ ଅଭ୍ରାପ୍ଳୁତ ।
ଦୁଃଖ-ବୋଧ ସମ ଗାଢ଼ ସୁଡ଼ଙ୍ଗର ତଳେ
ମାର୍ଜନୀ ହୃଏତ ନିଦ୍ରାର ସଫଳୀ
ଆକାଂକ୍ଷାର ଦେହ ବାସ ନିବଡ଼ ପ୍ରଜ୍ଜ୍ୱଳ ।
ତଥାପି ଏ ଅରଣ୍ୟର ଶୀଳ ଉଦ୍ବେଳିତ ପୁରୋହିତ
'ଆରତ୍ତ ବରତ୍ତ ପାପା'
ଅଣେ ବା ଆକଣ୍ଠ ଜରବୋଧ ।
ମଣିକଣ୍ଠାରର ଧାରେ କଳଙ୍କୀର ଲଜ ।
ଚନ୍ଦ୍ର ବଣିକର ମୌନତାରେ
ଆଶ୍ୱନ୍ଦିତ ଦ୍ୱୀପ ।



---

'ପାପରେ ଅନାସକ୍ତ ଓ ବରତ୍ତ—ଏହା ଉତ୍ତମ ମଙ୍ଗଳ'—ବୁଦ୍ଧଦେବ

# ଛ' ଡେସିମିଲ୍ ବସୁନ୍ଧରା

ଛ ଡେସିମିଲ୍ ଜମି ବର୍ଗାକାର ଇଟାର ପାଚେରୀ
କଂକ୍ରିଟର ପୋର୍ଟିକରେ ରହିଅଛି ଘେର
ସ୍ନାପ୍ ଡ୍ରାଗନ୍ ଲତା
ବୋଗନଭିଲା ବର୍ଣ୍ଣାଢ଼୍ୟ କମଳା
ନିଜସ୍ୱ କରାମତିରେ ଛିଡ଼ା ମୋର
ହର୍ମ୍ୟ ଓ ମହଲ ।

ଏଇମାଟି
ଯେମନ ବଟର ସ୍ପର୍ଦ୍ଧା ଘେରି ରଖେ କରି ଘରପାଟି
ଚେର ଓ ଓହଳ ଦେଇ ଶାଖାର ବିସ୍ତାର
ଘୋଷଣା କରିବା ଲାଗି ନିଜ ଅଧିକାର
ବଂଶ ପରଂପରା
ଇସ୍ତାମରଣ ପଟ୍ଟାରେ ମୁଁ ବି ବାନ୍ଧିରଖିଅଛି
ଛ ଡେସିମିଲ୍ ବସୁନ୍ଧରା ।

ପଶ୍ଚିମର ଶିଳ୍ପସୌଧ ଗମ୍ବୁଜରେ
ପ୍ରତିହତ ବିବର୍ଣ୍ଣ ରବିର
ଚୈତ୍ର କରି ନେଇ ଆସେ ମୋର ଝର୍କା
ସୁବର୍ଣ୍ଣ ଅମ୍ବର ।

ରାତେ ତାରାର ଚୁମ୍‌ବକ ହୀରକ ଅନ୍ଧାର
ସ୍ୱାଗତ ଜଣାଏ ଆସି ବିଶ୍ରାମଶାଳାରେ
ନୀଳ ସବୁଜ ଖଏରୀ ପଶ ପରି
ରଙ୍ଗମାଗଦ୍ୱାର ।
ଉଷାର ପଣନ୍ତ ତାଙ୍କେ ରୂପର ମହାଲୁଆଣି
ମଦ୍ୟର ସୁରଭି
ନୁଁ ହଠାତ୍ ପାଲଟିଯାଏ ସୌଖୀନ୍ କବିତାର
ମସ୍‌ଗୁଲ୍ କବି ।

ଛ ଡେସିମିଲ୍ ପରିମିତ ସରହଦେ
ମୋ ପୌରୁଷକାର
ନିର୍ମାଣର ଯେ ଆନନ୍ଦ ତାରେ ଆଣେ ଲୁଟି
ବିଶ୍ୱ-ବିଧାତାର ।
ଛଅ ଡେସିମିଲ ଜମି
ଏକ ଜନ୍ମଦେଲା ତାରେ ନୂତନର ସ୍ୱାଦ
ମୃତ୍ୟୁ ଦେଲା ବିଷମ ବିଷାଦ
ଜନ୍ମ ଓ ମୃତ୍ୟୁର ବ୍ୟାସ
ବିପରୀତବୋଧ ଦୁଇଆଡ଼
ମୋର ମଧ୍ୟ ସ୍ଥିତି
ଏଇ ବିଶ୍ୱାସ ପ୍ରଗାଢ଼
ଅଥଚ ଏ ସରଳ ରୈଖିକ ବିନ୍ଦୁ ସଂଘର ସଂହତି
ଜନ୍ମ ହିଁ କି ଦୁଃଖ ମୃତପର ହେଣ୍ଟୁ
ତା' ଆରଂଭ ଶେଷ ପରିଣତି !
ମୋର ପୂର୍ବଜ ଯେଉଁମାନେ
ଏଇସ୍ଥାନେ ଆସିଥିଲେ
ହାତେ ନେଇ ଦର୍ପିତ ମଶାଲ

ବୀର ଧନୁ ଅଙ୍ଗେ ବେଷ୍ଟରଣ ବ୍ୟାଘ୍ର ଛାଲ
କରଥିଲେ ପଣ
ସୂଚୀ ଅଗ୍ରପରିମାଣେ ଏ ମେଦିନୀ ନ ଦେବାକୁ ମାତ୍ର ବିନାରଣ
ମୋର ପର
ଦୁର୍ଲଙ୍ଘ ପ୍ରାଚୀର ଆଉ କୁମ୍ଭୀର ପରିଖା
ରଚିଗଲେ ଦୈର୍ଘ୍ୟ ପ୍ରସ୍ଥ ଧରି
ଜନ୍ମ ଓ ମୃତ୍ୟୁ ଶାସନ କଲେ ସିଏ
ଧରି ହତିଆର
ଏ ଭୂମି ଖନନ କଲେ ମିଳେ ନାହିଁ
ତାଙ୍କ ଆବିଷ୍କାର !
ତା'ର ପରେ ବେଦଗାନେ ହୋମାଗ୍ନିରେ
ଦେଇ ଘୃତାଞ୍ଜଳି
କେହି ଯୂପକାଷ୍ଠେ ନରବଳି
କେହି ବଂଶ ଦଣ୍ଡ ଖଣ୍ଡ ଦେଇ ସମ୍ରାଟରେ
ଭିକ୍ଷାପାତ୍ର ନିଜେ ନେଇ ରାଜ୍ୟ ଦେଇ
ତ୍ରିଦଣ୍ଡୀର କରେ
ସଂଶୟ ବିଷେ ଜର୍ଜର ସେ ଗୌରବଗୀତି
ହଜିଗଲା କାହିଁବା କମିତି
ତାର 'ପର' ଯେ ଆସିଲେ
ଜୀବନର ପାତ୍ରେ ଭରି ରସର ଆସବ
ଗାଇଗଲେ ଲବଣ ଓ ଲାବଣ୍ୟର ସ୍ତବ
ତାଙ୍କର ବିଷାଦ ଧ୍ୱନି ନିଭିଗଲା କାହିଁ ଦିଗପାରେ
କୃତ୍ତିକାର ଦୀପ ସମ ଆକାଶର
କୁଜ୍‌ଝଟୀ ଅନ୍ଧାରେ ।

ପୃଥିବୀର ଚତୁର ବିନ୍ୟାସ
ସଂହରଣ ଆଜ ଜୀବନ୍ୟାସ

ଗ୍ଧଲେ ଅସମ୍ଭବ ବେଖାତ୍ତର

ବାଜୁ ନାହିଁ କାହିଁ ନମ୍ବର୍

ପରଓ୍ୱାନା ଜାରି ନାହିଁ

ନାହିଁ ସରକାରୀ ଦସ୍ତଖତ୍

ମୁହିଁ ମାତ୍ର ଏକା

ମୋ'ର ଫାଟକ ଆଗେ ଉତ୍କୀର୍ଣ୍ଣ କରିଛି

ମୋ ଉପାଧି ମୋ ନାମର ଲେଖା !

ମିଛକଥା କେଉଁ ଇଲାକାର

କାହିଁ ଅନ୍ତର୍ଯାମୀ

ସତ୍ୟ ଖାଲି,

ମୁଁ ଉତ୍କଳ ପୁରୁଷ, ଭୂସ୍ୱାମୀ ।



# ହେ ମୁହୂର୍ତ୍ତ-ମୁଁ ମାତ୍ର ଭଣ୍ଡାରୀ

ଧୈର୍ଯ୍ୟ ନାହିଁ ପ୍ରସ୍ତୁ ନାହିଁ

ଅଥଚ ଅବସ୍ଥିତ ମାତ୍ର ହେ ମୁହୂର୍ତ୍ତ

ସମୟର ଅବର୍ତ୍ତରେ : ଅଭ୍ରରେତ ବାଲିରେ ସୂର୍ଯ୍ୟରେ ।

ଏ ଜନ୍ମର ପୂର୍ବେ ଯେଉଁ ଅନ୍ଧକାର

ମୃତ୍ୟୁପରେ ଯେଉଁ ଅନ୍ଧକାର

ତା'ର ମଧ୍ୟେ ମାଳାଙ୍ଗୀ ପତଙ୍ଗର ଏ ଝଟନ ଦକ୍ଷିଣା !

କେଉଁ ପଞ୍ଜିକାର ଲେଖେ ଏ ସନ୍ଦର୍ଭ କଥ

ଦ୍ରବ୍ୟ ବର୍ଣ୍ଣାଳିରେ !

କ୍ରମଶଃ କାଞ୍ଚନାଭା-ଗୈରିକ ବସନେ ସନ୍ନ୍ୟାସିନୀ

ବସ୍ତ୍ରାସମ ଉନ୍ମତ୍ତ ଯୌବନ ଜୀର୍ଣ୍ଣଜର

ପ୍ରଜ୍ଞା ଯଦ୍ଧ ପ୍ରବ୍ରଜ୍ୟା ଜନିତ

ଉଜ୍ଜ୍ୱଳ ଜୀବନ ସେତୁ ସତ୍ତ୍ୱରେ ଫାଟିଲ

ତାହା ହେଲେ କେଉଁ ଲାଭ ଅଙ୍କଭରା ସ୍ଲେଟ୍ !

ଏକ ଏକ ସବୁଦ୍ୱାର ଇନ୍ଦ୍ରିୟର ରୁଦ୍ଧହୋଇଆସେ

ଖାଲି ରହେ ସ୍ମୃତି

ସେଇ ଫାଙ୍କେ ଉଙ୍କି ଦେଲେ ଯାହା କିଛି ମିଳେ

ଭଣ୍ଡାରେ ମୁଁ ରଖୁଛି ସାଉଁଟି

ହେ ମୁହୂର୍ତ୍ତ, ଯାହା କରିପାରିଥାନ୍ତ ଶେଷ

ସେଥି ମଧ୍ୟୁ ମୁଁ କିଛି ଲୁଣ୍ଠନ କରି

ଥୋଇଗଲି

ମୁଁ ମାତ୍ର ଭଣ୍ଡାରୀ ।



# କାଞ୍ଚନ କୁନ୍ତଳାର ତରବାରୀ

ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ର ଅସ୍ତପ୍ରାପ୍ତ
ଶୀତର ପ୍ରବାହ
ଅଙ୍ଗାର ପାଠ ଶୃଙ୍ଗରୁ ନମ୍ରେ ନଇଁ ଆସେ
କାଞ୍ଚନ କୁନ୍ତଳା ରାଜକନ୍ୟା
ଚନ୍ଦ୍ରଶାଳା ଖିଲ୍‌ଣର ପାଶେ
ବୀର୍ଯ୍ୟବନ୍ତ ଈଶ୍ୱର ବା
ଅନାଦ୍ର ଅନୃତ
ଇଚ୍ଛାବୃତ
ଆସେ ।

ପଦ୍ମ ଶଙ୍ଖ ତୋରଣରେ ବଲ୍ଲମର ଫଳା ଯୋଗକରି
ସତର୍କ ସଙ୍କେତ ଚିହ୍ନ ସମ ଛୁଡ଼ା
ଯୁଗଳ ପ୍ରହରୀ ।
ମାହେନ୍ଦ୍ର ଲଗ୍ନର ଅପେକ୍ଷାରେ
ହୋମ ଅଗ୍ନି ଜ୍ୱଳେ
ସୁବର୍ଣ୍ଣ କୁଣ୍ଡଳେ ପୁରୋହିତ
ଶ୍ୱେତଶ୍ମଶ୍ରୁ ପଟ୍ଟ ବସ୍ତ୍ରାବୃତ ।
ଶାନଗ୍ରହର ମଣ୍ଡଳ
କେତୁର କୁଣ୍ଡଳୀ
ବର୍ତ୍ତୁଳୀ ଅକ୍ଷତ
ମନ୍ଦାରର ମାଳ
ଦୂର୍ବା ନାରିକେଳ

ପୂତଶ୍ରୋଦକ କଳସ ସମୀପ
ଜ୍ୱଳେ ଏକ ଗୌଣ ଧୂପ ।
ମନ୍ତ୍ରର ଆବୃତ୍ତି
କୃଷ୍ଣ ଛାଗ ବଳି ରକ୍ତ
ଆଉ ଘୃତାହୁତି

ଜ୍ଞାନ ଅହଂକାର ଅଭିଜ୍ଞତା
ଅନ୍ତରାଳ ବର୍ତ୍ତୀ ମୂର୍ତ୍ତି ସମ୍ମୁଖରେ ଆସି
କପୋଳରେ ନେଲା ରକ୍ତ ଟୀକା
କାଞ୍ଚନ କୁନ୍ତଳା ଦତ୍ତ ଶାଡ଼ୀର ଶିରୋପା
ହାତେ ବର୍ଚ୍ଛା ।
ପୁରୋହିତ ଶୁଭ ଉଚ୍ଚାରଣ
ଦୂର୍ବା ଧାନ୍ୟର ବର୍ଷଣ
ମେଘବର୍ଣ୍ଣ ଅଶ୍ୱପୃଷ୍ଠେ କଲା ଆରୋହଣ
ଊର୍ଦ୍ଧ୍ୱେ ଦେଖି କାଞ୍ଚନ କୁନ୍ତଳା
ମାଣିକ ସ୍ତମ୍ଭରେ ସହିଁ ରହିଛନ୍ତି ଉପରେ
ସନ୍ଦ୍ରମ୍ କଲା :
ଶପଥ ମୋ ଫେରିବାର ନେଇ ତରବାରି ।

( ୨ )

ସାପର ଜିହ୍ୱାର ସମ ହିଂସ୍ରକ ବତାସ
ନାଭିଶ୍ୱାସ ଥରଉଠେ ବୁକ
ଅନଚ୍ଛୁକ ଅଶ୍ୱ ପାର୍ଶ୍ୱେ ଚଳାଇ ଚାବୁକ
ପହଞ୍ଚୁ ରାଜବାଟୀର ପ୍ରାନ୍ତେ କଟୁଆଳ
କୁର୍ଣ୍ଣିସ୍ ଜଣାଇ ଖୋଲିଦେଲା ସୁଗୁଦ୍ୱାର ।

(୩)

ଅଗ୍ରେ ଘର୍ଘ ଭ୍ରମ ଗତି
କ୍ଳାନ୍ତ ସଂକ୍ରମଣ ବର୍ମତଳେ

କଠିଣ ପଞ୍ଜର
ଶୂନ୍ୟତାର ବାଘ ଜାଗେ
ଅରଣ୍ୟରେ ପତଙ୍ଗ ଝାଞ୍ଜର
ନିଃସ୍ୱ କଥକତା
ବନ ଶିଉଳୀର ଗନ୍ଧ
ମନେ ଏକ ନବଜ୍ଞତା—ଘ୍ରାଣ
ଯେତକ ସର୍ବସ୍ୱ ନେଇ
ବିଷାଦ ନିଶିକ୍ତ ପ୍ରାଣ
ଉନ୍‌ମୁଖ ଉତ୍ସୁକ
ଯେହ୍ନେ କାଠ ଦଂଶନର ସୁଖ
କୁଶ କାଶ ପ୍ରସ୍ତର ପ୍ରସ୍ତର
ଜ୍ୟୋତିରିଙ୍ଗଣର ବୃତ୍ତ
କାଟି କାଟି ଯାଏ ପରସ୍ପର
ଝିଂଜଳର ଝମିଂତ ବୃନ୍ଦ
ଦୂରେ ଶୁଭେ ତିତିରର ଭାଷ
ଚଦଗନ୍ଧ ଲୋମଗନ୍ଧ ଶ୍ୱାପଦ ଆଭାସ
କୁଠୁଘର ଦୀର୍ଘ ଲମ୍ଫ
ସ୍କନ୍ଧ ନଖ ଆଞ୍ଚୁଡ଼ାର ଦାଗ
ଜଳଶବ୍ଦ ଶୁଭେ
ଆଗ ଝାଙ୍ଗରର ନିଭୃତ ରନ୍ଧ୍ରରେ
ଝିଂକାରର ଝିଁ ଝିଁ ଝିଁ ଝିଁ ସ୍ୱର
ଗଳ୍ପ ସମ ପ୍ରଗଳ୍‌ଭର
ବନ୍ୟ ମହିଁଷ ନିଆଶା
ମଧୁକୁପୀ ଘାସର ଚଟାଣେ ଆଣେ
ଚିତା ପାଇଁ ଶୋଣିତ ପିଆସା
କ୍ଳାନ୍ତ ଲାଗେ
ଅଶ୍ୱ ମୁଖୁ ଝରିପଡ଼େ ଫେଣ
ପାର୍ଶ୍ୱଦ ସବାର

ମୁଟ୍ଖେ ତା ତମାଖୁ ଢାଏ
ସଇସଟି ନଏ ଅନ୍ୱଫେନ
ଅବକାଶର ସମୟ ଇଏ ନୁହେଁ
ନୁହେଁ ଏହା ବିଶ୍ରାମର ସ୍ଥାନ
କେତେ କ୍ଷଣ ସବି ଅବସ୍ଥାନ ?

ଅରଣ୍ୟ ଜୀବନ
ଦନ୍ତ କଣ୍ଟକ କଠୋର
ଏଇଠାରେ ପ୍ରକୃତିହିଁ ପଣ୍ୟ-ସ୍ୱୟଂବରା
ଈଶ୍ୱର କୃପଣ
ବିଷାକ୍ତ ପତଙ୍ଗ ଚହେ ମଧୁ
ଜିଘାଂସୁର ଅନୁଗତା ବଧୂ ।
ବିଳମ୍ବିତ ହ୍ୱମାମା ନଶିର
ସାଞ୍ଜୁ ପରେ ଶିରସ୍ତ୍ରାଣେ ଅଶ୍ୱର କ୍ଷୁରରେ
ଝରିପଡ଼େ ସାର୍ବିକ ଶିଶିର
ଦୂର ପାହାଡ଼ର ସଙ୍ଗମରେ
ଏକାଦଶୀ ମ୍ଲାନ ଜ୍ୟୋତ୍ସ୍ନା ଝରେ ।

(୪)

ସ୍ଥେଠ ଏକ ଜାଙ୍ଗଲିକ ଗ୍ରାମ—
କି ଯେ ତାର ନାମ ?
ଝୁରିଆଡ଼େ ଖେତ—ଖେତର ହେମନ୍ତୀ ଧାନ
ହିଡ଼ ଡିଏଁ ଜଳସ୍ରୋତ
ଗୁଡ଼ୁଁଖର ପରି ଅତି କ୍ଷୀଣ
ଚଞ୍ଚଳ ସନ୍ତରଣରେ
ରୂପାର ତାବିଜ୍ ପରି ମୀନ
ଖେଡ଼ି ଛୁଆଁ ଘର ସଜନାର ଗୁଛ
ବାସନ୍ତୀ ବର୍ଣ୍ଣ କୁକ୍କୁଟ
ନାରଙ୍ଗ ମେରୁନ୍ ରଙ୍ଗର ପରି—

ନାରଙ୍ଗ ମୁକୁଟ
ଅଦା ରସୁଣ କେସର ଭଜା ମାଛ
ମାଉଁସ 'ତଅଣ
ଅରୁଆ ସରୁ ଗୁଣ୍ଡିକ ଅନ୍ନ
କଦଳୀ ପତରେ ବଢ଼ା
କଂସା ଗିନା ଜଳ
ପନାସି ରସିର ଖଟେ
ଝୁମି ପଡ଼େ ଅପରାହ୍ଣ ଅଳସ ପ୍ରହର
ଏକ ଅପ୍ରମାଣିତ ଈଶ୍ବର ।
ତୁମେ କ ରହିଛ ଛୁଡ଼ା
କପାଟର କଣେ ?
ସମୁଦ୍ର ଶଙ୍ଖ ଆବର୍ତ୍ତ ବେଣୀ ଛୁଏଁ
ନୀଳ ଓଢ଼ଣାର ତଳେ କରୁଣ ନୟନ
ଠିକ ନମ୍ର ବାବୁଟି କ ଢେଙ୍ଗ
ଉଜାଣ ବାହୁନୀ ଗଙ୍ଗା
ପ୍ରସ୍ତରିତ ବୁକ ଛୁଇଁ ନିବେଣୀ ରୋ
ଆସିଅଛ ପ୍ରାନ୍ତରିତ ଧାଡ଼ିସ
ଅରକ୍ଷିତ ଭୂମି ପରେ ସୀମିତ ପ୍ରପ୍ଲାବେ
ସଂକଳ୍ପର ଜଳ ସମ
ଆଂଜୁଳାରେ ଧରି ରଖିବାକୁ ଇଚ୍ଛା ହୁଏ
ଇଚ୍ଛା ହୁଏ
ତୁମରି ତରଙ୍ଗ ମଗ୍ନ
ନଗ୍ନ ଅବଗାହେ ।
କେଉଁଠି ଦୁର୍ଭେଦ୍ୟ ଦୁର୍ଗ
ଦୁର୍ଲଙ୍ଘ୍ୟ ପରିଖା
ଖଚାଦ୍ଧୀର ଅନ୍ଧକାର
ତାଙ୍କ ରଖେ କୃଷ୍ଣ ଯବନିକା
କୁଳ ଦେବତା ପ୍ରତୀକ ଏକ ଚରବାଘ

କେଉଁ ଅବକ୍ଷୟ ସ୍ମୃତି
କେଉଁ ରାଜ ଐଶ୍ୱର୍ଯ୍ୟର ଉଠୁଛି ଉଚ୍ଛାସ !
ଅନାବୃତ ହାଡ ସବୁ ଝରିଯାଏ
ଅଲକ୍ଷ୍ୟ ଇଂଗିତେ
ଭୂଖାରୀର ଶୂନ୍ୟ ହାତ ଟେକା
ଶିଶିରର ଶୀତେ
ଅନର୍ଥକ ଗୌରବର ସଂକଳ୍ପରେ
ଅଭ୍ୟାର୍ଥୀ ମୁଁ ଯେ
କାହିଁକି ଯେ ?
କାଞ୍ଚନକୁନ୍ତଳା ନୀଳ ନୟନର ପାଇଁ ?
ପୃଥୁଳ ବାହୁ ଭ୍ରୂକୁଟି
ଗଜଦନ୍ତ ଐଶ୍ୱର୍ଯ୍ୟର ପାଇଁ—
ଅବା ରାଜକାମ୍ୟ ଏକ ସାନ୍ନିଧ୍ୟର ପାଇଁ ?
ନାହିଁ-ନାହିଁ । ନାହିଁ ?
ସରିଯାଏ କର୍କଟ କ୍ରାନ୍ତିର ରଶ୍ମି
ପୃଥ୍ୱୀର ପରିଧି ବଳୟ
ସଂକୁଚନେ, ମାୟାବୀ ସମସ୍ତ
ଫେରାଇ ଆଣଇ ହଂସ ଧୂସର ସାରସ
ଜମି ଆସେ ବୃକ୍ଷେ ବୃକ୍ଷେ ସୃଜନର ରସ
ବନଗର୍ବୀ ବାୟୁ
ଆଣେ ନୂଆ କୌତୁକର ଆୟୁ ।

( ୫ )

ଅରଣ୍ୟ ଏଠାରେ ପତ୍ର ଝରା
ଖରା ସ୍ନିଗ୍ଧ ସ୍ନେହ ସମ
ଶାଳ ବୀଥି ମଧୁମିତା ଫୁଲର ଗଜରା
ଶୀର୍ଣ୍ଣଝର ଦଳ ଗନ୍ଧ ଶିଉଳୀ ସୀମିତ
ଭୀତ ହରିଣ ହରିଣୀ; ମୃଗୟୁର—
ଚତାର ଚକ୍ଷୁର ଅଗ୍ନି—ବନ ଅଗ୍ନି ।

ବେଣୁବନେ ସାରଙ୍ଗୀର ରବ
ରବ ବନ୍ୟ ବସ୍ୱରର ଚନ୍ଦନର ବନେ
ମନେ ଗ଼ଜକାପ୍ସ ଚଳନର କଷ୍ଟ ବ୍ୟବହାର ।
ଶୀକାର ଶିଆଳୀ ପଣ୍ଡରେ ଭୋଜ
ଖୋଜ ବ୍ୟଭ୍ରଷ୍ଟର ପାଇଁ
ଦେହ ତଳେ ଜାଗିଉଠେ ଆଦିମ ଜାନ୍ତବ
କ୍ରୀଡ଼ାର କୌଶଳ ଶେଷେ ଇତସ୍ତତଃ ଧଡ଼ିରହେ
ଶାର୍ଦ୍ଦୂଳର ଶବ ।
ପ୍ରଥମୀ ମାନୁଷୀ ଦଳ—
ବେନାମୀ ଫୁଲର ବେଣୀ
କଷ୍ଟ ମଦ୍ୟ ଧନୁ ଶର ଦେହ
ବନ୍ଧୁବଧ ଜୀବନ ବି
କ୍ରମଶଃ କ୍ରମଶଃ ମିଶି
ଯାଏ ହଜ ହଜ
ଶୀର୍ଣ୍ଣ ଛବ ବନ
ପାଂଶୁଳ ଫଗୁଣ ।
ଆକାଂକ୍ଷାରେ ଯେହେତୁ ଏ ଚେତନାର ସଂକ୍ରମଣ
ସେହେତୁ ଏ ନିଷ୍କ୍ରମଣ
ପରିକ୍ରମା ଆଉ ନିଷ୍କ୍ରମଣ !
ପ୍ରାଣହୀନ
ଉଦ୍ଭଟ ନାଟକସମ ସମ୍ମୁଖେ କାନ୍ତାର
ଅର୍କେଷ୍ଟ୍ରା ଶେଷ ସିମ୍ଫନି
ସମ ବୃଷ ରେଖା
ସମ୍ପର୍କର ଶେଷ ଚିହ୍ନ ପାଣ୍ଡୁ ବର୍ଣ୍ଣ ଭୂମି ।
ଶୁଭ୍ର ପ୍ଲାବୀ ମ୍ଳାନ ଦୃଷ୍ଟି
ଫେରିବାର ଗାଢ଼ ତୃଷ୍ଣା ନିସ୍ତୃଣ ପ୍ରାନ୍ତର
ସୂର୍ଯ୍ୟ ଜ୍ୱଳେ
ମସ୍ତକରେ ମସ୍ତିଷ୍କରେ
ପ୍ରସ୍ତରରେ ବାୟୁଶିଖା ଜ୍ୱଳେ

ଅଶ୍ୱର ଚକ୍ଷୁରେ ସୂର୍ଯ୍ୟ ନିଶ୍ୱାସ ଅଥବା
ବର୍ଚ୍ଛାର ଫଳକେ ସୂର୍ଯ୍ୟ ଊର୍ଦ୍ଧ୍ୱେ ଉଡ଼େ ଶ୍ୟେନ
ନିଷ୍କରୁଣ ମାଳ ଦାନ୍ତେ
ନାଚେ ନିୟମିତ ଅଗ୍ନି ଶିଖା
କେତେ କଙ୍କାଳର ସ୍ତୂପ
ଅଜଗର ସ୍ଥୂଳ ସମ ଉଚ୍ଚ ଅଧିତ୍ୟକା
ତାର ପରେ ପାହାଡ ପାହାଡ଼
ପାଷାଣଭେଦୀ ଉଦ୍ଭିଦ,
ପୁରାତନ ପ୍ରାର୍ଥନା ମନ୍ଦିର
ବନ୍ୟ ଓ ବିଦ୍ୟୁତ୍ ବିଦ୍ଧ
ତଥାପିତ ଏଥେ ଉଠେ ପ୍ରାର୍ଥନା ସ୍ୱର
କଣ୍ଟପଯୂ ପ୍ରସାଦ ପ୍ରାର୍ଥୀର ଆଉ ପ୍ରାର୍ଥିନୀର,
ପାଦେ ନତମାତ
ଦଶମୀ ପ୍ରତିମା ଦେଖା ସୁଖ
କାହିଁ କେଉଁ କେତେ ନାଇଁ ଖାଲ ଭଗ୍ନଶିଳା
ବିଳାପ କରୁଛି ଛିନ୍ନ ସ୍ଥାଣୁ ପ୍ରାନ୍ତେ ବାଗ
ଇନ୍ଦୁର ଶିକାର ଲୋଭେ
ଉଚ୍ଛନ୍ନତ ନାଗ ।
ସ୍ତୂପ ଶୈଳିକ ପ୍ରସ୍ତର
ଗୋଖ୍ରା କଣ୍ଟକାକୀର୍ଣ୍ଣ ଭୂମି
ସ୍ୱେଦସିକ୍ତ ପାର୍ଶ୍ୱଜନ, ତୀକ୍ଷ୍ଣ କଣ୍ଠ ସ୍ୱର
ବିଶ୍ରାମର ପାଇଁ ପ୍ରାର୍ଥନା ଅବ୍ରତ ।
ହ୍ରସ ଶ୍ୱାସ, ରୋମ କୂପେ କାଠ
ଫିନିକ୍ସ ସମ ସୂର୍ଯ୍ୟ
ହ୍ରାସ ସ୍ଥାୟୀ ଝଂଝାସୁ ଦ୍ୱୈରଥ ।
ରୌଦ୍ର ତପ୍ତ ଚର୍ମ ଥଳ ଜଳ
କନ୍ଦମୂଳ ଓ ଖର୍ଜୁର
ଲୁଣ ମତ୍ସ୍ୟ ଶୁଷ୍କ ଗୋଧୂମ ପିଷ୍ଟକ

ତୀବ୍ର ମସଲା ମିଶ୍ରଣ ନାରଙ୍ଗର ଦ୍ରବ
ମଧ୍ୟାହ୍ନ ଆହାରେ ମଗ୍ନ ମୁଖସବୁ
ଦ୍ୱିପ୍ରହର ଭୂତ ।
ଅଶ୍ୱ ପାଇଁ କୋଳଥର ଝୁଲି
କରୁଛି ହ୍ରେଷା
ତନ୍ଦ୍ରା ଆଉ ଉତ୍ତେଜନା
ଲେଉଟେ କୁଦର ସ୍ପୃହା
ପାଲଟେ ନିମେଷେ
ପ୍ରାଗୈତିହାସିକ ଆଶ୍ରୟ ।
କାଞ୍ଚନ କୁନ୍ତଳା
ଘୃତ ଅନ୍ନେ ପ୍ଲୁତ ଅବୟବ
ଯେହେନ୍ତ ଦୁଗ୍ଧ ନାଗ
ଫାଂପ ଚକ୍ଷେ
ଦାବାନଳେ ମଣିର ବିଦ୍ୟୁତ୍
କ୍ଷୀଣକଟୀ ଡିଠ ବାହ୍ନି ତମିସ୍ରାର ସ୍ରୋତ
ଚୂମେ ପଦ,
ଅସ୍ଥିର ଚଞ୍ଚଳ ମନ
ତାର ଅସ୍ଥିରତା ସେଇ ଚରବାଗ
ଇତିହାସ ଯାର ଏକ ନିଜସ୍ୱ ଭୂମିକା
ଅନିବାର୍ଯ୍ୟ ସମୟର କଳଙ୍କୀରେ
ଅବଲୁପ୍ତ,
କାନ୍ଥି ଭଗ୍ନ ଦୁର୍ଗ ବନ୍ୟ ବୃକ୍ଷ
ପୁରାତନ ଆସବାବ ମଧ୍ୟବର୍ତ୍ତୀ
ସିନ୍ଧୁକରେ ସିନ୍ଦୂର ଚର୍ଚ୍ଚିତ
ତାର ପୂଜାବେଦୀ
ଶବର ଛିଦ୍ର ତ
ପରିଖାର ପରେ ଭଗ୍ନ ସେତୁ
ବନ୍ୟରକ୍ତ ବୁଭୁକ୍ଷୁ କୁମ୍ଭୀର ।

କମ୍ପାଁ ଏ ଶପଥ ମୋର
ଉଚ୍ଚବର୍ଗ ଲାଙ୍ଗୁଳଶାଳୀ ଶୃଗାଳ
ମାଳ ବର୍ଣ୍ଣ ବଂଶର ଗାରିମା
ତରବାରି ନେଇ ଆସେଁ
ନେଇ ଆସେଁ
ଗୌରବର ହାଓ୍ୱାର ବାଉଲ୍ ବୁଜ୍‌ରୁକ !
ଅପରାହ୍ନ ଆସେ
କର୍କଟ ଛତର ସମ
ଘୂର୍ଣ୍ଣିବାୟୁ ପ୍ରସରେ ତା ନଖ ।
ମେରୁଦଣ୍ଡେ କ୍ଲାନ୍ତି
ଜିହ୍ୱାରେ ଲବଣ
ଲଗାମ୍ ରଜ୍ଜୁର ଗୃପେ
ରକ୍ତାଭ ଫାପୁଲି
ଅସ୍ଥି ଗ୍ରନ୍ଥିରେ ଯନ୍ତ୍ରଣା
ନିର୍ଜନ ଗନ୍ତବ୍ୟ ପଥେ
ରାଜକୀୟ ପରିଚ୍ଛଦ
ଅସ୍ତ୍ର ପ୍ରଦର୍ଶନୀ
କେଡ଼େ ପରିହାସ !

(୭)

ସମ୍ମୁଖେ ପର୍ବତମାଳା
ଶୃଙ୍ଗ ଶୃଙ୍ଗ ଚହିତ କ୍ଷିତିଜ
ଗୃଧ୍ରିଣୀର ମାଡ଼ ଯହିଁ ପ୍ରସ୍ତର ଫାଟଲ
ବନ୍ୟ ଗୁଚ୍ଛଗଳର ଦଳ ବାୟୁଗନ୍ଧ ବାରି
ଉର୍ଦ୍ଧ୍ୱେ ଉର୍ଦ୍ଧ୍ୱେ ଉଡିଯାଏ
କେତୋଟି ମର୍କଟ
ତିନ୍ଦୁକ ଫଳର ଲୋଭେ ଶାଖାଲମ୍ବମାନ
ବଙ୍କିମ ଆବର୍ତ୍ତି ପଥ ଉପଳ ଶଂକୁଳ

ବନ୍ଧୁ ନମ୍ରେ ଦ୍ରୋଣୀ
ଗର୍ଭେ ନର୍ଝର ଗାମିନୀ
ଅରଣ୍ୟର କନ୍ୟାଦଳ
ଜୀବନ ଏଠାରେ ରମଣୀୟ ?
ତୈଳ ପାଇଁ ଶାଳ ବୀଜ
ମଦ୍ୟ ପାଇଁ ମହୁଲର ଫୁଲ
ଖାଦ୍ୟ ପାଇଁ କନ୍ଦ, ଟାଳ ଶସ
ମାଂସ ପାଇଁ ଶଶକ ମୂଷିକ
ବିଷ ପାଇଁ ସର୍ପଗନ୍ଧା,
କ୍ଷତ ପାଇଁ ବିଶଲ୍ୟକରଣୀ
ପ୍ରେତ ପାଇଁ ବଳି ଆଉ ଦେହାତ୍ମର ପାଇଁ
ଅରୁଆ ଚାଉଳ ବିର ଜାଳ ।
ନିର୍ଜନ ପ୍ରେମର ଗୀତ
ପ୍ରତିଦ୍ୱନ୍ଦତାରେ ଧନୁ ଶର
ବିଶ୍ୱାସ ଘାତକ ଜହର
ଅଞ୍ଚଳର ତଳରେ କଟାରି
ଶୃଙ୍ଗ ବାଦ୍ୟ ଘୁଙ୍ଗୁରର ସୁର
ଫୁଟେ ଉଠେ ଅଗ୍ନି ବର୍ଣ୍ଣ
ବିଷଣ୍ଣ ଅରଣ୍ୟେ ଗନ୍ଧଶ୍ରୀ ।
ଘାଟୀ ପାର ହେଲେ ହାଟ
ଆସେ ଗବଶିଣୀ
ଚଞ୍ଚଳ ଚରଣ ଆଖି ଚପଳ ହରିଣୀ
ପଇସାଟାଏରେ ବିକ ସର୍ବସ୍ୱର ମଧୁ
ନିଃସ୍ୱ ହୋଇ ଫେରି ଯାଏ
ଗୀତ ଭୁଲି ହୁଏ ମୂଲପଦୁ
ଖାଲି ଅଶ୍ରୁ , ଶୂନ୍ୟ ସବୁ ଖାର
ଝରିଲେଣି ଚିଟଉଲ ଗଜରା

କୁକୁରର ଡାକ ଶୁଭେ ଦୂରେ
ଗଛ ପତ୍ର ଝଡ଼େ !

(୮)

ସମନ୍ନମ୍ ଭୂମି ମରୁ
କଣ୍ଟକରେ ହିଂସ୍ର ନାଗଫେଣୀ
ଖର୍ଜୁର ଅରଣ୍ୟ କ୍ୱଚିତ୍
ଏଇ ପଥ ନୁହେଁ ଅଶ୍ୱଗାମୀ !
ଭୁଲ ହେଲା ପଥର ନିର୍ଦ୍ଦେଶ
ସ୍ତବ୍ଧ ପାର୍ଶ୍ୱ ପାରିଷଦ ସବୁ
ଇଙ୍ଗିତରେ ଅନିଚ୍ଛାର
ମୁଖ ମୁଦ୍ରା ହୁଏ ପରସ୍ପର ।
ଦିଗ୍‌ବଳୟ ପାରେ ବୋଧେ ଝଡ଼
ଆକାଶର ଶଙ୍ଖଚିଲ
ସାରସ ହଓଟି
ପାର୍ଶ୍ୱଚର ଦଳ କହେ – ହୋଇପାରେ
ଦକ୍ଷିଣରେ ମଣିଷର ବସ୍ତି
ଦେଖାଯାଏ ପଦ ଖୋଜ ବାଲୁଚରେ
କିନ୍ତୁ ସମୟର ସ୍ୱସ୍ତି ନେଇ ଅଶ୍ୱ ରଖି ଶାଳେ
କରି ନେବାପାଇଁ ଫେର ଯାହା ଆୟୋଜନ
ପଣ୍ୟବାହୀ ଉଷ୍ଟ୍ର ନେଇ
ମୁଁ ସମ୍ମତି ଦେଲେ ।
କିଛି ଖାଦ୍ୟ, କିଛି ଜଳ ପାର୍ଶ୍ୱେ ଥୋଇ
ପାର୍ଶ୍ୱଚର ଦଳ
ମରୁ ଗ୍ରାମ ଅଭିମୁଖେ ଗଲେ ।
ଦ୍ୱିପ୍ରହର
କ୍ରମଶଃ ଉତ୍ତପ୍ତ ବାୟୁ
ବାଲୁଚର
ଯହିଁ ନାମ କିଛି

ପଙ୍ଗପାଳ ଛିନ୍ନପତ୍ର ଅରଣ୍ୟର ଦଳ
ତନ୍ଦ୍ରୀ ଗଜରନ୍ତି ।
ରକ୍ତି ତପ୍ତଶିଖ ତନ୍ଦ୍ରୀ ଗ୍ରୀଷ୍ମର କାର୍ପଣ୍ୟେ
ବଢାଇଲା ଅପେକ୍ଷାର ବିଶ୍ରାମ ସମୟ ।
ଉତ୍ତପ୍ତଜଳ, ଶୁଷ୍କଖାଦ୍ୟ, ସ୍ୱେଦ ପ୍ଳୁତ ଦେହ
ଉଳଙ୍ଗ ବିସ୍ମୟ
ବିମୂର୍ତ୍ତ କରିଲା ମନ-
ପାଶ୍ୱର୍ଚର କଲେ ପଳାୟନ ?
ସରାବ୍‌ଖାନାରେ ଅବା ସଂକ୍ଷୀର୍ଣ୍ଣ
ପରିଚାରିକା ପ୍ରଣୟେ ସୌଖୀନ ପ୍ରଶ୍ରୟ
ଅଥବା ଦ୍ୟୁତ କ୍ରୀଡ଼ାରେ ସର୍ବସ୍ୱ ହରାଇ
ଫେର୍ କିଣିବାର ପଣ
କିମ୍ବା ଅନ୍ୟ କିଛି ଲୋଭମୋହ ?
ଶୋଚନୀୟ ସଞ୍ଜ ନଏଁ
ଦୂର ହିଗ୍‌ବଳୟେ
ପୃଥିବୀ ବକ୍ଷରେ ଯହିଁ ଆକାଶ ଆଁ କରି
ଗୋଧୂଳିର ଛଟା
ଶୂନ୍ୟତାର ଆଶ୍ୱାସ କରୁଛି
ସନ୍ଧ୍ୟାର ଆକାଶେ
ସ୍ମରି ନିଜ ପୌରୁଷ ଶପଥ
ଏକାକ ଯାତ୍ରୀ ମୁଁ ନେଲି
ମୋର ଅଗ୍ରପଥ ॥

ଏ ରାତି ଭୌତିକ
ମ୍ଳାନ ଚନ୍ଦ୍ର ଯାଦୁକର
ବାଲିବନ୍ତ ମ୍ୟାମଦ୍
ଅଉ ଡାଇନୋସଅର୍ ।
ଦୂରେ ଶିଆଳର
ଯୁଥବଦ୍ଧ ହେମନ୍ତ ଚିତ୍କାର

ଅଶ୍ୱହୀନ, ପାଦୁକ ବହୀନ ଯାହା
ଚମତ୍କାର—ଅତି ଚମତ୍କାର !
ଶୀତଳ ଜ୍ୟୋତ୍ସ୍ନାର ମାନାଭ ଗୁଣ୍ଠନ
ତଳେ ରହସ୍ୟର ସୁପ୍ତ ପୁଷ୍ପ
ପତଙ୍ଗର ଶବ୍ଦ ନାହିଁ ବାୟୁ ସ୍ତବ୍ଧ ଅତି
ନିସ୍ପନ୍ଦ ତାରାର ଧାରାରନ୍ତି
ଜଳଉଠେ, ସ୍ମୃତି
ନେଇଯାଏ ଅତୀତ ପ୍ରଭାତେ
ଦୂର ଶତାବ୍ଦୀର ପାରେ
କେଉଁ ଜନପଦ ପ୍ରାନ୍ତେ—
ବଧୂକହେ ; ମରିଯାଏଁ ଲାଜେ
ଜାଗି ଦେଲ ନାହିଁ କାହିଁ
ଏ ମଳିନ ବସନର ସାଜେ
ଶିଥିଳ କବରୀ
କେମନ ଆବରି
ଯାଏଁ କହ କାର୍ଯ୍ୟେ ?
ଅମଙ୍ଗଳ ହୁଏ ଯଦି
ଦୂରେ କାର ବେଣୁ ବାଜେ ନା କି
ପଶ୍ଚାତରୁ ନାମଧରି କିଏ ଯାଏ ଡାକି ?
ଦୀପ ଜ୍ୱଳେ ନାହିଁ ଦିଗ ସୀମା ପରେ
ରଶ୍ମି ତାର ଆସି ଛୁଏଁ ଆଖି
ବଙ୍କିମ ଇଂଗିତ ସମ !
କୁହେଁ ଦୀପ ? ଦୀପ ସାକ୍ଷୀ
ଡାଆଣୀ ଆଲୁଅ !
ଝରିପଡ଼େ ଲୁହ—
ମିଥ୍ୟାରେ ସନ୍ଦିଗ୍ଧ ମନ
ସତ୍ୟ ସମ୍ମୁଖରେ ପାଏ ଭୟ !
ସୂର୍ଯ୍ୟ ଜ୍ୱଳେ

ଅଗ୍ନି ପିଣ୍ଡ ସୂର୍ଯ୍ୟ ଜ୍ୱଳେ
ଏ ସୂର୍ଯ୍ୟ ଆଣେନା ଆଉ
ଅନିକେତ ଆନନ୍ଦର ରସ
ଊର୍ଦ୍ଧ୍ୱମୂଳ ବିସ୍ତାରର ସବୁଜ ପ୍ରକାଶ
କାହିଁ କାହିଁ ବୃକ୍ଷ ବସୁମତୀ
ଆକାଶ ଦର୍ପଣେ
ପ୍ରତିବିମ୍ବ ତାର ନାହିଁ ପଡ଼େ
ପ୍ରକୃତି ପାଲଟେ ଉଗ୍ର
ବିଷମୟ
ବିକୃତ ଲୋଳିତ ଅକ୍‌ଟୋପସ୍
କୁଟୀଳ ବିଭତ୍ସ
ନିଃସଙ୍ଗତା
ପ୍ରସାରିତ ଅଷ୍ଟ ବାହୁ
ସାପ ସମ ଅବା ଅଭିଶାପ ।
ବଢ଼ୁଛି ଧୂସର ହାତ
ନଖ ଦନ୍ତ ଜିହ୍ୱା ରକ୍ତସ୍ନାତ ।
କେ ? କେ ଆସେ ? ପାଶେ ବିବସ୍ତ୍ର
ଫୁଲଝର ଫୁଟି ଉଠେ
ସୂର୍ଯ୍ୟଫୁଲ, ସୂର୍ଯ୍ୟ ଫୁଲଝରେ !
କି ନୃତ୍ୟ ଏ ? ଉଦ୍ଦଣ୍ଡ ଦଣ୍ଡର—
ଧୂର୍ତ୍ତ ହାଓ୍ୱା ସମ ନୃତ୍ୟ
ହାଓ୍ୱା ନୃତ୍ୟ
ଶୂନ୍ୟ ଚିତ୍କାର ।
ମୁଁ ଚାହୁଁଛି ତାରେ
ହାତେ ସିଏ ତୃଷ୍ଣାପାତ୍ର ଧରେ
ପବିତ୍ର ଜଳର ପାତ୍ର ।
ତଥାପିତ ପାତ୍ର ନାହିଁ ପାତ୍ରଝରା ଜଳ
ଛଳ ଛଳ କଳ କଳ

ଜଳାବର୍ତ୍ତେ ଆଚ୍ଛନ୍ନ ଅମୂର୍ଦ୍ଧ ।
ତେବେ ଏଥେ ମୃତ କପାଁ ନଦ୍ଧ ?
ନିଦ୍ରା ଆସେ, ଏ ନିଦ୍ରା ଶୁଭଦା
ସୂର୍ଯ୍ୟ ଅଗ୍ନି ତପ୍ତ ବାଲୁକା ଶଯ୍ୟାରେ
ତଥାପି ତ ନିଦ୍ରା ନିଦ୍ରା ନିଦ୍ରା ।
ପରିଶ୍ରାନ୍ତ ଶେଷ
ସୁଶାନ୍ତର ନିଦ୍ରା—ନ ଥାଉ ବ ଜଳ,
ଶୀତଳ ଶୀତଳ ॥

(୧୦)

ସାଗର ବାଲୁକା ବେଳା
ଶିପ ଓ କଙ୍କଡ଼ା
ଗୁଡ଼ିକଙ୍କ ଝାଉ ଓ କେତକୀ
ଝପମାନ ସମ୍ପିଳତ ଊର୍ମି ତୋଳେ
ଫେଣମାଳା
ପ୍ରସରିତ ଅଦ୍ଭୁତ ଜ୍ୟୋତିର
ସାଳସ ଅଙ୍ଗୁଷ୍ଠ ।
ଏ କି ଆୟୁଷର ଶେଷ ପର୍ବ
ପଡ଼େଁ ବସି ଜୀବନ ଗୀତିର
ମଙ୍ଗଳ ଗୁଞ୍ଜଣ ?
ମନେ କ୍ୱଚତ୍ ପଡ଼େ
ପଡ଼େନି ବା ମନେ
ଏ ପ୍ରଜନନ ଯନ୍ତ୍ରଣାର ?
ଜରାୟୁର ଅନ୍ଧକାରେ ଅଙ୍କୁରର ଉଦ୍‌ଗମନ କ୍ଷଣେ
ଜନନ ପ୍ରାର୍ଥନା ଯନ୍ତ୍ରଣାର ?
ଅତେ ମୃତ୍ୟୁ- କ୍ଷଣିକ ବ୍ୟବଧାନରେ
ଯନ୍ତ୍ରଣାର ? ମୃତ୍ୟୁ ଯନ୍ତ୍ରଣାର ?
The stroke of death

is as a lover's pinch,
which hurts
and is desired···
ପଶ୍ଚାତରେ ମୃତ ଇତିହାସ
ମୃତ ସ୍ମୃତି ପ୍ରଖ୍ୟାତର ଯାହା ଅଯାହାର
ଜନପଦ କାନ୍ତାରର ଗିରିଜନ ଅରଣ୍ୟର
ଗ୍ରାମ ବୃଦ୍ଧ ସ୍ୱାମିମାର ରାଜପଥୀ ଦଣ୍ଡଭୟ
କାଞ୍ଚନା କୁନ୍ତଳା ପ୍ରତି ସମ୍ମାନର
ସ୍ୱପ୍ନାଚାର ମିଥ୍ୟା ଏକ
ଜୀବନଛନ୍ଦର ।
ଲୁଣି ବାୟୁ ଗନ୍ଧେ ବୃଦ୍ଧ ନାରିକେଳ ପରି
ସ୍ମୃତି ବି ସ୍ଥବିର,
କେମନ୍ତ ମରୁଭୂ ହେଲ ପାରି ?
ଏଥେ ମୁଁ ଯେ ଶଙ୍ଖମାଳାର ବେପାରୀ
ସେଇମାତ୍ର ଏକ ପରିଚୟ
ବିତିଯାଏ ସୂର୍ଯ୍ୟ ଚନ୍ଦ୍ର ତାରାର ସମୟ !
ପ୍ରଣୟିନୀ ଦନ୍ତକ୍ଷତ ପରି
ଆନନ୍ଦ ଓ ଯନ୍ତ୍ରଣାର
ମୁଁ ଭ୍ରମର ଅପେକ୍ଷାରେ
ମରଣ-ଅବ୍ସର !



# ଶେଷ ଦାନ

ତୁମ ମହାନିଦ୍ରା ମଧ୍ୟେ ସ୍ୱପ୍ନ ଦେଲ
ତୁମ ଜାଗର-ଜୃମ୍ଭଣ ଶବ୍ଦେ ଦେଲ ଇଥର କମ୍ପନ
ତୁମ ଆଲୋକ ବୃନ୍ତରେ ଦେଲ
କାଞ୍ଚନର ଛଟା
ମେରୁ ବଳୟେ ନିହାର
ଅମ୍ବୁଧିର ଜଳେ ଲକ୍ଷତ୍ ମୀନ
ମୃତ୍ତିକାରେ ହରିତ୍ ବରଣ ।
ତୁମ ଗୁହା. ବିଦାରଣ ଅଗ୍ନ୍ୟୁତ୍ସବେ
ଧାତୁ ପଙ୍କେ ମୁଁ ଦେଇଛି
ନୃତ୍ୟ ରୁଦ୍ର ତାଳ
ଉର୍ମିରେ ଘୂର୍ଣ୍ଣୀ ତାଣ୍ଡବ
ଘୋର ଘନଘଟା ଅଟ୍ଟହାସ୍ୟ
ଉଲଗ୍ନେଲେ
ଲାସ୍ୟ ଚପଳାର ।
ତୁମର ସୃଷ୍ଟିର ରନ୍ଧ୍ରେ ମୁଁ ଦେଇଛି ଛନ୍ଦ
ଅନୁବନ୍ଧେ ଏବଂ ମୁଁ କବିତା
ତୁମ ବେଣୁ ସ୍ୱନେ ଅନୁକ୍ଷଣ
ପ୍ରାଣତନ୍ତ୍ର ଅଶ୍ରୁ କାନ୍ଦୁ ଏବଂ ।
ନିଃସଙ୍ଗର ଶୂନ୍ୟତାରେ
ନିଅ ନିଅ
ସେ ଟିକିକ ନିଅ ।



# ସ୍ୱକୀୟତା ସମର୍ଥନର ଏକ ଖସଡ଼ା

" Binod Chandra Nayaka an avent garde is notorious in contemporary Oriya Literature for his deliberate outlandish poetic behaviour"

[ Dr. Mayadhar Mansing the Ilustrated weekly of India 1967 ]

ଉପରୋକ୍ତ କଟୂମନ୍ତବ୍ୟ ପରେ ମଧ୍ୟ ଡକ୍ଟର ମାୟାଧର ମାନସିଂହ ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସରେ "ଦୁଷ୍ଟ ବୈଦେଶିକା" ରୂପେ ମତେ ଭର୍ତ୍ସନା କରିଛନ୍ତି । 'ପରମ୍ପରା ବୋଧ ହୀନ', 'ପଳାୟନପନ୍ଥୀ', 'ପ୍ରତିକ୍ରିୟାଶୀଳ' "incorrigibly a romantic'ଏବଂ 'ବିବଦମାନ କବି' ରୂପରେ ମୋର ଦୁର୍ନାମ ତ ରହିଛି ; କିନ୍ତୁ ମୁଁ କେବଳ ଡକ୍ଟର ମାନସିଂହଙ୍କ ପ୍ରଦତ୍ତ ମୋ ପ୍ରତି 'Notorious' ବିଶେଷଣରେ ମୁଁ ପ୍ରତିବାଦ କରୁଛି । ତାଙ୍କ ଦ୍ୱାରା 'ବୈଦେଶିକା' ଶବ୍ଦର ପ୍ରୟୋଗ ବିଶେଷ ତାତ୍ପର୍ଯ୍ୟ ଉପରେ ଆଧାରିତ । ଏଇ ଦୁଇଟି ଅଭିଯୋଗର କୈଫିୟତ୍ ମୁଁ ନିମ୍ନରେ ଉପସ୍ଥାପନ କରୁଛି ।

"ଅତି ଆଧୁନିକ କବିତାର ଉନ୍ମେଷ ପର୍ବ ଭାବେ ଅତି ନିର୍ଭୁଲଭାବେ ୧୯୩୫-୩୬ ସମୟକୁ ଚିହ୍ନିତ କରାଯାଇ ପାରିବ ।"

(କୋଣାର୍କ-୬୭ ସଂଖ୍ୟା) ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ଏ ଉକ୍ତି 'ନୀଳଚନ୍ଦ୍ରର ଉପତ୍ୟକା' ରେ ସୁରେନ୍ଦ୍ର ମହାନ୍ତିଙ୍କ ଭୂମିକା ଉପରେ ନ୍ୟସ୍ତ ହେଲେ ମଧ୍ୟ ସମର୍ଥନ କରାଯାଉଛି । ଏଇ ସମୟରେ ସଚ୍ଚି ରାଉତରାୟ, କୁଞ୍ଜବିହାରୀ ଦାସ ଓ ମୁଁ କଲେଜ ଶିକ୍ଷାୟତନକୁ ପଦାର୍ପଣ କଲୁଁ ।

ସଚ୍ଚି ରାଉତରାୟଙ୍କ ଅନୁପ୍ରବେଶ କବିତାର ଭୂମିକାରେ ସ୍ୱୀକୃତ ହୋଇ ଯାଇ ସାରିଥିଲା—ପାଥେୟ (୧୯୩୧) ଓ ପୂର୍ଣ୍ଣିମା (୧୯୩୨) ପ୍ରକାଶ ପରେ ; କିନ୍ତୁ ତାଙ୍କ ପରବର୍ତ୍ତୀ କବିତାରେ ସ୍ୱୈରବାଦ ଏବଂ ସାମ୍ୟବାଦୀ-ବସ୍ତୁବାଦର ଯୁଗ୍ମସ୍ୱର ସମନ୍ୱୟତା ଆଣି ପାରି ନ ଥିଲା । ୧୯୩୭ ରେ ଅତି ପ୍ରଚଣ୍ଡ ଭାବରେ ସେ ବସ୍ତୁବାଦର ପ୍ରବକ୍ତା ରୂପେ ଅବତୀର୍ଣ୍ଣ ହେଲେ । ରାଉତରାୟଙ୍କ ସହ ମୋର ଆତ୍ମିକ ସମ୍ବନ୍ଧ ୧୯୩୩ରୁ-ଉମାନେହେରୁଙ୍କ ସଂପାଦନାରେ ଦିଲ୍ଲୀରୁ ପ୍ରକାଶିତ 'The Childrens News ରେ . ତାଙ୍କର ଇଂରାଜୀ କବିତା My Mother Land' ଏବଂ ମୋର 'The Girl and the Cuckoo' ଏକତ୍ର ମୁଦ୍ରଣ ସୁଯୋଗରୁ । ଏଇ ସମୟରୁ ସେ ମତେ ବିପ୍ଳବ ମନ୍ତ୍ର ଦ୍ୱାରା ଦୀକ୍ଷା ଦେବାର ଚେଷ୍ଟା କରିଥିଲେ । ତାଙ୍କର ରାଜନୈତିକ ସଚେତନତା ଅତ୍ୟନ୍ତ ଶାଣିତ ଥିଲା ଏବଂ ତାଙ୍କର ଉତ୍ତେଜିତ ନେପଥ୍ୟ ସ୍ୱର ଗାଙ୍ଗପୁର ପରି ଏକ ଅର୍ବାଚୀନ ରାଜ୍ୟର ବାସିନ୍ଦା ରୂପେ ମତେ ସଂକୁଚିତ କରି ରଖୁଥିଲା । ୧୯୩୭ ରେ ମୁଁ 'ସହକାର'ରେ 'କମ୍ୟୁନିଷ୍ଟ ବିପ୍ଳବ ଓ 'କବିତା' ଶୀର୍ଷକ ଏକ ନିବନ୍ଧ ପ୍ରକାଶ କରିଥିଲି, ଏହା ସଚ୍ଚି ରାଉତରାୟଙ୍କ ପ୍ରଭାବର ଫଳ । କେତୋଟି କବିତା ମଧ୍ୟ 'ନବଭାରତ'ରେ ରେ ସାମ୍ୟବାଦର ସ୍ଳୋଗାନ୍ ରୂପେ ପ୍ରକାଶ କରିଥିଲି ; କିନ୍ତୁ ମୋର କବିତାର ସାନ୍ଦ୍ରତାର ଅଭାବ ଅନୁଭବ କରି ମୁଁ ମ୍ରିୟମାଣ ହୋଇପଡ଼ିଲି । କୁଞ୍ଜ ବିହାରୀ ଦାସ ମଧ୍ୟ 'କଏଦୀ' କବିତାରେ ଅନୁରୂପ ସ୍ୱର ଉତ୍ତୋଳନ କରିବାକୁ ଯାଇ ଫେଲ୍ ମାରିଥିଲେ । କୁଞ୍ଜବିହାରୀ ଦାସ ଓ ମୁଁ ନିଜସ୍ୱ ବୃତ୍ତର ଅନୁସନ୍ଧାନକୁ ପ୍ରୟାଣ କଲୁଁ । ସଚ୍ଚି ରାଉତରାୟ ଏବଂ ଅନନ୍ତ ପଟ୍ଟନାୟକଙ୍କ ଯୁଗ୍ମସ୍ୱର ଓଡ଼ିଆ କବିତାରେ. ନୂତନ ଚେତନାର ପ୍ରସରଣ କଲା; କିନ୍ତୁ ସଚ୍ଚି ରାଉତରାୟଙ୍କ ସ୍ୱର ଥିଲା ଶାଣିତ କ୍ଷୁର ଧାର ।

ମୁଁ ଆତ୍ମ ସମୀକ୍ଷା କଲି—ମୋର ମଗ୍ନ ଚୈତନ୍ୟ ମଧ୍ୟରେ କେତୋଟି ଆକର୍ଷଣ ଅତ୍ୟନ୍ତ ଲୋଭମାୟ ଥିଲା । ପ୍ରଥମଟି ତରୁଦତ୍ତଙ୍କ ଜୀବନୀ ଏବଂ ରଚନା । ହାଇସ୍କୁଲ ଜୀବନରେ ଏଚ୍. ଏଚ୍ ଦାସଙ୍କ ରଚିତ Toru Datta's, life and letters ପଢ଼ି ମୁଁ ଅତ୍ୟନ୍ତ ବିଚଳିତ ହେଉଥିଲି ; ମାତ୍ର ସତରବର୍ଷର ଏକ ବାଳିକାର ଇଂରାଜୀ ଓ ଫ୍ରେଞ୍ଚ ସାହିତ୍ୟରେ ଦକ୍ଷତା ଏବଂ ଆକସ୍ମିକ ମୃତ୍ୟୁ ଏକ ବିଯୋଗାନ୍ତକ ରୋମାଞ୍ଚ ମାଦକତାର ତନ୍ମୟତା ଦେଇଥିଲା । ପରେ ୧୯୩୬ ରେ

ରେଭେନ୍‌ସା କଲେଜରେ ମୁଁ ପଢ଼ିଲି ତାଙ୍କର The gleonings from the french field—ଏକ ଗୁଚ୍ଛ କବିତା ପଢ଼ିବାକୁ ମତେ ଦେଇଥିଲେ ପ୍ରଫେସର୍ ଗିରିଜାଶଙ୍କର ରାୟ । ଦ୍ୱିତୀୟଟି ଖ୍ରୀଷ୍ଟିନା ରସେଟ୍ଟୀଙ୍କ ଇଂରାଜୀ କବିତା । ମୋର ଜ୍ୟେଷ୍ଠାଭଗ୍ନୀପତି ସୁନ୍ଦରଗଡ଼ର କୌଣସି କନ୍‌ଭେଣ୍ଟ୍‌ରେ ଶିକ୍ଷକ ଥିଲେ । ଅବକାଶରେ ମୁଁ ମିସନାରୀମାନଙ୍କ ସହ ମିଶିବାକୁ ସୁଯୋଗ ପାଉଥିଲି । ସେଠାରେ ସିଷ୍ଟର୍ ମାରିଆନାଙ୍କ ଠାରୁ Golden Treasury of English Verseରେ କବି ଖ୍ରୀଷ୍ଟିନାଙ୍କ କବିତା ପଢ଼ିଲି । ଗୋଟାଏ ପଙ୍‌କ୍ତି ମନେ ଅଛି :

What are short ?
Spring
and
youth !
What are deep ?
Ocean
and
Truth

ଏଇ ମହିଳା ମାତ୍ର ଏକୋଇଶ ବର୍ଷ ବୟସରେ ପାଗଳ ହୋଇ ଚିତ୍କାର କରି କରି ଭାଇ ଡାଣ୍ଟେ ଗ୍ରେବିୟେଲ୍ ରସେଟ୍ଟିଙ୍କ ଆଲିଙ୍ଗନ ମଧ୍ୟରେ ମୃତ୍ୟୁବରଣ କରିଥିଲେ । ସିଷ୍ଟର୍ ମାରିଆନା ଫରାସୀ ମହିଳା ଥିଲେ । ତାଙ୍କ ନିକଟରେ ମୁଁ ଫରାସୀ ଚିତ୍ରକାର ଡାଲି ସାଲ୍‌ଭାଡର୍‌ଙ୍କ ଛବି ଦେଖିଥିଲି । ବିଚିତ୍ର ସେ ଛବି—ଏକ ନଗ୍ନ ନାରୀ ମୂର୍ତ୍ତି ; କିନ୍ତୁ ମୁଖଟି ଏକ ଶବାୟମାନ ସାରସର । ମୁଁ ତାଙ୍କୁ ପଚାରିଥିଲି—ଏମିତି ଚିତ୍ର କ'ଣ ସତ୍ୟ । ସେ କହିଥିଲେ କିଏ କହିଲା ସତ୍ୟ ବୋଲି—ଏହା ଅତି ସତ୍ୟ । ବୁଝିପାରିଲି ନାହିଁ ! ୧୯୪୧ ପୂଜାସଂଖ୍ୟା ଆରମ୍ଭରେ 'ଇମ୍ପ୍ରେସନିଷ୍ଟିକ୍ ଆର୍ଟ' ଉପରେ ଏକ ନିବନ୍ଧ ରଚନା କରି ପ୍ରକାଶ କରିଥିଲି ; କିନ୍ତୁ ସେଥିରେ ମୁଁ ଡାଲି ସାଲ୍‌ଭାଡର୍‌ଙ୍କୁ ଅନୁଶୀଳନ କରି ପାରିଲି ନାହିଁ । ମୋର ହାଇସ୍କୁଲ ଜୀବନ ୧୯୨୮-୩୫ ମଧ୍ୟରେ—ଏ ରହସ୍ୟ ଦୁଇଟି ମୋର ରଚନାର ଅନ୍ତରାଳରେ ରହିଯାଇଥିଲା । ହାଇସ୍କୁଲ

ଅଧ୍ୟୟନବେଳେ ; କିନ୍ତୁ ରବୀନ୍ଦ୍ରନାଥ ଅନୁସାରୀ କବିତା ମୁଁ ଲେଖିବାକୁ ଆରମ୍ଭ କଲି । ମାୟାଧର ମାନସିଂହଙ୍କ 'ଧୂପ' ଓ 'ସବୁଜ କବିତା' ଏକାସାଙ୍ଗେ ପଢ଼ିବାକୁ ପାଇଥିଲି, ଉଭୟଟିର ଆସ୍ୱାଦ ରବୀନ୍ଦ୍ରନାଥଙ୍କର 'କଥା ଓ କାହିଣୀ' ଓ 'ସୋନାର ତରୀ'ର ପର୍ଯ୍ୟାୟରେ; କିନ୍ତୁ ଦେଖିଲି କମିତି ଟିକିଏ ଇତର ଲାଗିଲା, ବରଂ ସଚ୍ଚିରାଉତରାୟଙ୍କ 'ଯୁଗବାଣୀ' ଏବଂ 'ନବୀନ'ରେ ପ୍ରକାଶିତ କବିତା ଭିତରେ ଭାବ ସମନ୍ୱୟତାର କେତେଟା ଭରସାମ୍ୟ ନ ଥିଲେ ମଧ୍ୟ ଶାଳୀନ ପରି ମନେହେଲା । ମୁଁ ୧୯୩୩ରେ 'ହେମନ୍ତୀ' ପ୍ରକାଶ କଲି । ହରିହର ମହାପାତ୍ରଙ୍କ ଅଧ୍ୟକ୍ଷତାରେ ପରିଚାଳିତ ସବୁଜ ସାହିତ୍ୟ ସମିତିର ଆନୁକୂଲ୍ୟରେ ତାରୁଣ୍ୟ ଚପଳତାମତେ ; କିନ୍ତୁ କବିତା ମଧ୍ୟରେ ଇନ୍ଦ୍ରିୟ ଘନତା ପରିପ୍ରକାଶ ପାଇଁ ଅଧିକ ଗୁରୁ ପକାଇଥିଲା—ଫଳରେ ରବୀନ୍ଦ୍ରନାଥଙ୍କ ରହସ୍ୟମୟତାର ସମୀପବର୍ତ୍ତୀ ମୁଁ ହୋଇପାରିଲି ନାହିଁ । ଶେଷ ସୋପାନ ବେଳକୁ ବାର୍ଣ୍ଣାର୍ଡ୍ ଶଙ୍କ 'Man and Superman' ଏବଂ 'Arms and the man' ପଢ଼ିବାକୁ ପାଇଲି । ତାଙ୍କଠାରୁ ଶିକ୍ଷାପାଇଲି—Man is pursued, woman the pursuer ଶୀର୍ଷକ୍ ବାକ୍ୟ ନିଷ୍ଠୁର କିନ୍ତୁ ସତ୍ୟ । ପ୍ରାଣୀ ଜଗତରେ ପୁରୁଷ ହିଁ ତ ସୁନ୍ଦର—ସିଂହ, ମୟୂର, କୁକ୍କୁଟ,— । ୧୯୩୬ରେ ମୁଁ ଆରମ୍ଭ କଲି 'ଚନ୍ଦ୍ର ଓ ତାରା' । ମୋର କାବ୍ୟ ନାୟିକା, ଚନ୍ଦ୍ରଙ୍କ ପଶ୍ଚାତ୍ ଦେବଗୁରୁ ଜାୟା ତାରାଙ୍କ ଅନୁସରଣର କାହାଣୀ— 'I go' ଏବଂ 'Libido' ତଥ୍ୟର ଶେଷ କଲି । କଟକର ନରିଲୋରେ ଏକ ସନ୍ଧ୍ୟାରେ—ସରଳା ଦେବୀଙ୍କ ଗ୍ରାମରେ । ତାଙ୍କ ଭାଇ ଗୌରୀ କାନୁନ୍‌ଗୋଙ୍କ ନିମନ୍ତ୍ରଣ କ୍ରମେ ମୁଁ ପୂଜାଛୁଟି ସେହିଠାରେ ହିଁ ଅବସ୍ଥାନ କରିଥିଲି । ତାଙ୍କ ପୋଖରୀ କୂଳରେ, ତାଙ୍କ କ୍ଲବ୍ ହାଉସ୍‌ରେ ରାତିଯାପନ କରିବା ପାଇଁ ମୋର ବନ୍ଦୋବସ୍ତ ହୋଇଥିଲା । କୁମାରପୂର୍ଣ୍ଣିମାର ନିର୍ଜନ ରାତିରେ ଚନ୍ଦ୍ରକୁ ଅଭିଶପ୍ତ ରୂପେ କେମିତି ମୁଁ ଅନୁଭବ କଲି—ଏ ଏକ ମୃତଚନ୍ଦ୍ର । ସେଇଠାରେ ମୋର 'ଚନ୍ଦ୍ର ଓ ତାରା' କାବ୍ୟ ନାୟିକାର ମୁଁ ପରିସମାପ୍ତି ଦେଇଥିଲି ।

ବାର୍ଣ୍ଣାର୍ଡ୍ ଶଙ୍କ ନାଟକ ସମାଲୋଚନା ସବୁ ପଢ଼ି ବିଶେଷତଃ ତାଙ୍କର ମୁଖବନ୍ଧ ସବୁରୁ ଜାଣିଲି ଯେ ସେ 'ସୋଫେନ୍ ହାଓ୍ୱାର୍'ଙ୍କ ଦର୍ଶନର ତତ୍ତ୍ୱ ଅବଲମ୍ବନ କରି କହୁଛନ୍ତି—ଲାଇଫ ଫୋର୍ସ୍ ବା ଜୀବନ ବେଗ ଏକ ଲମ୍ବମାନ

ମାଳାର ସୂତ୍ରାମାଳୀ ! ଜଣ୍ଡି ଜଣ୍ଡି ମଧ୍ୟ ଦେଇ ଯେପରି ଏକ ଗ୍ରନ୍ଥନ କୌଶଳର ସୂତ୍ର ବିଦ୍ୟମାନ ଠିକ୍ ସେଇପରି । ବ୍ୟକ୍ତି ଏଠାରେ ଜଣ୍ଡି ସଦୃଶ ସେ ନିମିତ୍ତ ମାତ୍ର—ତା' ମଧ୍ୟଦେଇ ଅନନ୍ତ ଜୀବନ ସୂତ୍ର ପ୍ରବାହିତ ହୋଇଯିବ । ଯିବ ଦୃର୍ଣ୍ଣତା ଆଡ଼କୁ । ଆଦିମ ମାନବ ହେବ ଅତିମାନବ । ଡାରଉଇନ୍‌ଙ୍କ ବିବର୍ତ୍ତନବାଦ ଉପରେ ଏହା ଆଧାରିତ । ଏଇ ଅତିମାନବର ଅବସ୍ଥାନ ବୋଧହୁଏ ଅରବିନ୍ଦଙ୍କ ଅତିମାନବ ସ୍ତର । ନାରୀ ଏହାର ଭୂମିକା ; କିନ୍ତୁ ନାରୀ ଜନନୀ ରୂପରେ ସନ୍ତାନର ଭାର ଜନକ ଉପରେ ନ୍ୟସ୍ତ କରିବାକୁ ଚାହେଁ । ତେଣୁ ତା'ର ରୂପ, ସଂଭ୍ରମ-ଶୀଳତା ଦ୍ୱାରା ପୁରୁଷକୁ ନିଜର ପରିସର ମଧ୍ୟରେ ବାନ୍ଧି ରଖିବାକୁ ଚାହେଁ । ଏଠାରେ ସେ ଜଗନ୍ନାଥ ଦାସଙ୍କ "ନାରୀ ମୋହିନୀ ବିଷ୍ଣୁ ମାୟା । ଘେନ ଯେସନ ବିଦ୍ୟୁଚ୍ଛାୟା"ର ପ୍ରତୀକ । ଏଇ ବନ୍ଧନ ମଧ୍ୟରେ ପୁରୁଷ ବିଗଳିତ ହୁଏ—ଅତିମାନସ ସ୍ତରକୁ ଯାଇ ଅତିମାନବ ହୋଇଯାଇ ପାରେନା । ଯେଉଁମାନେ ନାରୀର ଏଇ ରୂପଜାଲକୁ ଛିନ୍ନ କରି ପଳାୟନ କରନ୍ତି—ସେମାନଙ୍କୁ ନାରୀ କାପୁରୁଷ କହେ, ଏମାନେ ଅଧର୍ମୀ । ନାରୀ ମଧ୍ୟ ପଳାୟନ କରେ ଏମାନଙ୍କ ଠାରୁ—ରାଜଯେମା କଣ୍ଟୁଆଳର ପ୍ରଣୟପ୍ରାର୍ଥିନୀ ହୁଏ । ନାରୀ ଚାହେଁ ସୁସ୍ଥ ସବଳ ବୀର୍ଯ୍ୟବାନ୍ ପୁରୁଷ ଯେ ତା'ର ସନ୍ତାନର ଜନକ ହେବ । କବି ତପସ୍ୱୀ ପଣ୍ଡିତ ବା ସଂସାରକୁ ନେତି ନେତି ଚିତ୍କାର କରୁଥିବା ନପୁଂସକ ନୁହେଁ । ସୃଜନର ବେଦୀରେ ନାରୀ ହିଁ ନାରୀ, ପୁରୁଷ ହିଁ ପୁରୁଷ—ପ୍ରୟୋଜନ, ପରିଚ୍ଛନ୍ନ, ପରିବେଶ ଆଉ ସ୍ୱାସ୍ଥ୍ୟବାନ ସ୍ୱାସ୍ଥ୍ୟବତୀ—ନାରୀ ଆଉ ପୁରୁଷ । ପ୍ରେମ ନିଛକ୍ ଏକ କବି କଳ୍ପନା—ପ୍ରେମ ନିବେଦନ ବାଗ୍ମିତା, ରୂପ ଆବରଣ ଉକ୍‌ର ରଙ୍ଗ ମାତ୍ର—Beauty is skin deep. ଶୃଙ୍ଗାର ଯୌନ କ୍ରୀଡ଼ା—ଯୌନ ପ୍ରକାଶ ସୃଷ୍ଟିର ମାଧ୍ୟମ ! 'ଚନ୍ଦ୍ର ଓ ତାରା'ରେ ଏଇ ସମସ୍ୟାର ମୁଁ ଅବତାରଣା କରିଛି । ଯାର ମିଥ୍ (myth) ମୁଁ ଗ୍ରହଣ କରିଛି ପୁରାଣରୁ, ଆଙ୍ଗିକ ରବୀନ୍ଦ୍ରଙ୍କ 'କଚ ଦେବଯାନୀ'ରୁ, ସମସ୍ୟା ଫ୍ରୟେଡ୍‌ଙ୍କ ଅବଚେତନରୁ । ବୃହସ୍ପତି ଦେବଗୁରୁ କିନ୍ତୁ ନପୁଂସକ, ତେଣୁ ତାରା ତାଙ୍କର ସନ୍ତାନ ପାଇଁ ବାଛି ନେଇଛନ୍ତି ଚନ୍ଦ୍ରଙ୍କୁ ; କିନ୍ତୁ ଚନ୍ଦ୍ର କଳଙ୍କିତ-ମୃତ । "ହୈମନ୍ତୀ ପରବର୍ତ୍ତୀ ମୋର ତଥାକଥିତ ସମସ୍ତ ଅରୋମାଣ୍ଟିକ୍ କବିତାର ଅନ୍ତଃସ୍ରୋତରେ ଏଇ ମାନସିକ ବ୍ୟବସ୍ଥିତି ବର୍ତ୍ତମାନ ।"

କଲେଜ ଜୀବନରେ ଉପାଧି ଶିକ୍ଷା ପରିସରରେ 'ସହକାର' ଓ 'ନବ ଭାରତ'ରେ କଳା ଏବଂ ସାହିତ୍ୟ ବିଷୟକ ବହୁ ନିବନ୍ଧ ମୁଁ ପ୍ରକାଶ କରିଛି । 'ଆର୍ଟ୍ ଓ ସ୍ରଷ୍ଟା' ଶୀର୍ଷକ 'ସହକାର'ର ଦୁଇଟି ସଂଖ୍ୟା ବ୍ୟାପୀ ନିବନ୍ଧରେ ମାୟାଧର ମାନସିଂହଙ୍କ କବିତାକୁ 'କାମୁକର କବିତା' ଏବଂ ସଚ୍ଚି ରାଉତ ରାୟଙ୍କ କବିତାକୁ 'ପଶୁର କବିତା', ରୂପେ ସମାଲୋଚନା କରିବାକୁ ଆସ୍ପର୍ଦ୍ଧା କରିଛି । ପରିଶେଷରେ ଦ୍ରୋଣାଚାର୍ଯ୍ୟ ମାନସିଂହ ଏବଂ ମାଟିର ଦ୍ରୋଣ ସଚ୍ଚି ରାଉତରାୟଙ୍କ ଠାରୁ ପାଇଛି ନଷ୍ଟୋଶସ୍ୟୁସ୍ ଏବଂ ପଳାୟନପନ୍ଥୀ ଆଖ୍ୟା । ଠିକ୍ ଏତିକି ବେଳକୁ ମୋର ମିତ୍ରଲଭ—ସୁରେନ୍ଦ୍ର ମହାନ୍ତି, ଗୁରୁପ୍ରସାଦ ମହାନ୍ତି, ମନୋରଞ୍ଜନ ଦାସ ଓ ରଘୁନାଥ ଦାସ । ଏମାନେ ନୂତନ ସୃଷ୍ଟିର ପ୍ରେରଣାରେ ଉନ୍ମୁଖର ଏବଂ ଉଜ୍ଜ୍ୱଳ, ନିଆଁର ଖେଳ ଏମାନଙ୍କ ଧର୍ମ । ଜୀବନ ସହିତ ସାଲିସ୍ ଆଦୌ ନାହିଁ ।

ମୁଁ ସେଇପ୍ରଶ୍ନ—What is deep ?—କ'ଣ ଗଭୀର ? ବାରମ୍ବାର ନିଜକୁ ପଚାରୁଛି Ocean—ମହାସାଗର ? Truth—ସତ୍ୟ ? ସତ୍ୟ ମହାସାଗର ପରି ଗଭୀର । ତା' ହେଲେ କବିତାରେ ସତ୍ୟ ହିଁ ଲେଖିବି । କିନ୍ତୁ ସତ୍ୟ କଣ ? ରବିନ୍ଦ୍ର ନାଥଙ୍କ ଠାରୁ ଉତ୍ତର ପାଇଲି :

ଯା ରଚିବେ ତୁମି
ତାଇ ସତ୍ୟ
କବି ! ତବ ମନୋଭୂମି
ରାମେର ଜନମ ସ୍ଥଲ,
ଅଯୋଧ୍ୟାର ଚେୟେ୍ସ ସତ୍ୟ ଜେନୋ !

ଯୁଆ ସିଷ୍ଟର୍ ମାରିଆନାଙ୍କ ଅତିସତ୍ୟ, ଡାଲି ସାଲ୍‌ଭେଡର ତା ହେଲେ ସାରସମୁଖୀ ରମଣୀର ଚିତ୍ର ଅଙ୍କନ କରି ବାସ୍ତବ (ପରା—ବାସ୍ତବ Surrealim)ର ଅବତାରଣା କରିଛନ୍ତି :

ଏ ଶତାବ୍ଦୀର ତୃତୀୟ ଦଶକ ଦ୍ୱିତୀୟାର୍ଦ୍ଧରେ ସବୁଜଯୁଗର ରୋମାଣ୍ଟିକ୍ ପଥ ପରିହାର କରି କବିତା ଏକ ସଙ୍କଟ ସ୍ଥଳରେ ପହଞ୍ଚି ଯାଇଥିଲା—

ଏ ସଙ୍କଟ ବିଜ୍ଞାନ ଏବଂ ପ୍ରଯୁକ୍ତି ବିଦ୍ୟାର ପ୍ରଭାବ । ଏହାର ପ୍ରଭାବରେ ତ ସମଗ୍ର ବିଶ୍ୱର ଚିନ୍ତାଧାରା ଓଲଟ ପାଲଟ ହୋଇ ଯାଇଥିଲା । ଫ୍ରୟେଡ଼୍‌ଙ୍କ ଅବଚେତନା ଏବଂ କାର୍ଲ ମାର୍କସ୍‌ଙ୍କ ସମାଜ ଚେତନା ପ୍ରତ୍ୟେକ ବସ୍ତୁ ଓ ବିଷୟକୁ ନୂତନ ଦୃଷ୍ଟିକୋଣରୁ ମୂଲ୍ୟାଙ୍କନ କରିବା ପାଇଁ ଶିକ୍ଷିତ ସଂପ୍ରଦାୟଙ୍କୁ ଅନୁପ୍ରେରଣା ଯୋଗାଇ ଥିଲା । ନୂତନ ଯୁଗର ପ୍ରବକ୍ତାଙ୍କ କବିତାରେ ମାର୍କସୀୟ ଧାରଣା ଧାରା ଅତ୍ୟନ୍ତ ଉଗ୍ର ରୂପରେ ଉଦ୍‌ଗତ ହେବାକୁ ଲାଗିଲା । ଫ୍ରୟେଡ଼୍‌ଙ୍କ ଅବଚେତନା ଭିତରେ ସତ୍ୟର ସନ୍ଧାନ ପାଇଁ ମୁଁ ପ୍ରସ୍ତୁତ ହେବାକୁ ଲାଗିଲି । ଆତ୍ମପ୍ରତ୍ୟୟ ଅଭାବ ହେତୁ ମୁଁ ସଂକୁଚିତ, ମ୍ରିୟମାଣ ଓ ମ୍ଳାନ । ସଚ୍ଚିରାଉତରାୟ ମୋ ଉପରେ ବିମୁଖ ହୋଇ ପ୍ରତିକ୍ରିୟାଶୀଳ, ପଳାୟନପନ୍ଥୀ ପାଇଁ ଶ୍ଳେଷ କବିତା ସବୁ ପ୍ରୟୋଗ କଲେ । ଦ୍ୱିତୀୟ ମହାଯୁଦ୍ଧର କ୍ଳାନ୍ତି ଓ ବିଷଣ୍ଣତା, ଅବସାଦ ଓ ବିଷାଦ ମନକୁ ଆଚ୍ଛନ୍ନକରି ଥାଏ । ୧୯୪୨ ରେ ରେଭେନ୍‌ସା କଲେଜ ଅଫିସ ସେଣ୍ଟେଲ ନିଆଁରେ ଭସ୍ମୀଭୂତ, ଗୃହଅଗ୍ନେ 'ପରଜା—ମରଯା'ର କମିଣ୍ଡ ଉତ୍କଟ ଧ୍ୱନି । କୁଜଙ୍ଗ ନିକଟରେ ଜାପାନର ବୋମା ବର୍ଷଣରେ ଏକ ଭାରତୀୟ ଜାହାଜ ବିଧ୍ୱସ୍ତ । ଇଷ୍ଟ୍ ହଷ୍ଟେଲ୍ ଆଉ ଓ୍ୱେଷ୍ଟ୍ ହଷ୍ଟେଲ୍ ମିଲିଟାରୀ ବ୍ୟାରାକ୍ ହସ୍ପିଟାଲ । ପ୍ରଫେସର୍ ସୁନ୍ଦରମ୍‌ଙ୍କ ସର୍ଭେଣ୍ଟ୍ କ୍ୱାର୍ଟସ୍‌ରେ ରହି ମୁଁ ପଲଟନ୍-ମାନଙ୍କ ଦୁରବସ୍ଥା ଦେଖୁଥାଏଁ । କଲେଜ ବନ୍ଦ । ମୁଁ ରହିଯାଇ ଥାଏଁ —କଲେଜ ଫିଲ୍ଡ଼ର ମିଲିଟାରୀ କ୍ୟାମ୍ପ୍‌ପସ୍ ମଧ୍ୟରେ । ଜଖ୍ମୀ ପଲଟନ୍‌ମାନେ ଆସନ୍ତି ମୋ ପାଖକୁ—ତାଙ୍କ ପରିବାର ପାଖକୁ ଚିଠି ଲେଖାଇବା ପାଇଁ—ମନିଅର୍ଡ଼ର ଫର୍ମ ଲେଖାଇବା ପାଇଁ ପଞ୍ଜାବ ସେ ପାଖରେ ଟାକସୀଲା—ସେଠାରେ ଦୁଃସ୍ଥ ଗୃହିଣୀ କନ୍ୟା—ଶିଶୁପୁତ୍ର ବୁଦ୍ଧଦେବଙ୍କ ତକ୍ଷଶୀଳା । କଚ୍ଛ-ରାନ୍ ଅବ୍‌ଝ କଚ୍ଛ୍-ବୃଦ୍ଧପିତା ମାତା ଦ୍ୱାରକା ? ଜଳେ ଦ୍ୱାରକା ନାଶଯିବ ! ନାଗାଲେଣ୍ଡ—'ପମ୍ପାସର ମାଳମାରେ ବିକଚ ଯୌବନା । ଉଲୁପୀ ନାଗେଶ କନ୍ୟା କରେ ଜଳକ୍ରୀଡ଼ା ! ମାୟାଧର ମାନସିଂହଙ୍କ ଉଲୁପୀ ବିଭ୍ରହେବ ପାନ୍ଠିକ୍ । ଶୀଘ୍ର ଟଙ୍କା ଦରକାର । ଗୋଦାବରୀ ଡ଼ିଷ୍ଟ୍ରିକ୍‌ଟ । 'ବହିଇ ଗୋଦାବରୀ ସେ ଗିରିପାଦ/ଶିଳା ବନ୍ଧୁର ଶେଯେ ଝର୍ଝର ନାଦେ ।' ବିଧବା ମା' ଭଉଣୀ ବି ବିଧବା । 'ସାବ୍ ! ଆପ୍‌କା ମେହେରବାନି । ଆଖିଛଳ ଛଳ କରି ଅନାଏଁ—ମିଲିଟାରୀ ଡ୍ରେସ୍ ତଳେ ଏକ କରୁଣ ପୁରୁଷ । ରଖ୍‌ଲିଜିୟେ ସାବ୍ ! ଧୂପ୍ ମେ ଏକଲା ବୈଠେହେଁ ନମସ୍କାର ଜଣାଏଁ ! ମ୍ଳାନ ମୁଖରେ କେଇଟି ନୋଟ୍ ପକେଟ୍‌ରେ ଓ୍ୱାପସ୍ କରି ଆଟାନ୍‌ସନ୍ ସଲାମ୍ ଜଣାନ୍ତି ।

ଅଦମିତ ସେଇମାନେ
ଅପ୍ରମିତ ସ୍ଥୈର୍ଯ୍ୟ ଅଉ ବିଶ୍ୱାସ ଅବାଧ
ନୂତନ ପ୍ରଭାତ ଡାକଆଣେ ଦ୍ୱାରେ ଦ୍ୱାରେ
ତାଙ୍କ ଘଣ୍ଟା ନାଦ !
ଜୀବନ ପଞ୍ଚୁପାଖୁଡ଼ା କରିବାକୁ ଉନ୍ମୋଚିତ
ଆଞ୍ଜୁଳା ଆଞ୍ଜୁଳା ଦେଇଯାନ୍ତି ରକ୍ତର ଆରତି
ସେଇମାନେ ଏ ଜାତିର
ସୌଭାଗ୍ୟର ସୂର୍ଯ୍ୟର ସାରଥି ।
[ସହାସ୍ତ୍ରପ]

ତା'ହେଲେ ବାସ୍ତବତାର ସମ୍ମୁଖୀନ ହେବାକୁ ହେବ—କବିତା କଳ୍ପନା ଅନୁବର୍ତ୍ତିନୀ ନହୋଇ ହେବ ବାସ୍ତବତାନୁଗାମିନୀ ।

ବକ୍ତବ୍ୟ ବଦଳାଇବାକୁ ପଡ଼ିବ । ଲଳିତ ଲବଙ୍ଗଲତା ପରି ଦେ ତ୍ୟାଗକରି ପୁରୁଷ, ରୀତ ଗଦ୍ୟ ଗନ୍ଧୀ ଶବ୍ଦର ପ୍ରୟୋଗ କରି ନୂତନ ଦ୍ୟୋତନା ନିର୍ମାଣ ପାଇଁ ବ୍ରତୀହେଲ । କବିତା ହେବ ରିଅ୍ୟାଲିଷ୍ଟ—ବାସ୍ତବବାଦୀ ।

ଏଇ ପରୀକ୍ଷାର ପ୍ରଥମ କବିତା 'ଅଷ୍ଟ୍ରେଲିଆ' ୧୯୪୦ରେ 'ସହକାର'ରେ ପ୍ରକାଶ ପାଇଁ ବାଳକୃଷ୍ଣ କରଙ୍କ ନିକଟକୁ ପ୍ରେରଣ କଲି । ମନ ଭିତରେ ଶଙ୍କାର ଦ୍ୱନ୍ଦ୍ୱ । ଛନ୍ଦ, ବୈଦେଶିକ ଶବ୍ଦ, ବିଷୟବସ୍ତୁରେ "ସମସ୍ତ ପରମ୍ପରା ବିଚ୍ଛିନ୍ନ ହୋଇ ଯାଇଛି ।"

ଅଷ୍ଟ୍ରେଲିଆର ମରୁପ୍ରାନ୍ତର ଛବି
ବନ୍ଧୁ, ଦେଖିଛ କଳ୍ପନା ପରି କେବେ ?

ଜଳହୀନ ଆଉ ଜନହୀନ ଶତଶତ କୋଶବ୍ୟାପି ଭୂମି
ଦିଗ ଛୁଇଁ ଯାଏ ବିସ୍ତୃତ ପ୍ରାନ୍ତର
ମଧ୍ୟାହ୍ନ ବେଳା ଛୁଡ଼ା ହେଲେ ଯହିଁ ଖାଲି ଦେଖାଯାଏ ଦୂରେ

କୁଲ୍ ଗାର୍ଲିର ସୁନାଖଣିଠାରୁ କୋଇଲ୍ ଧୂଆଁର ରେଖା
ଖାଲି ଶୁଣାଯାଏ ମେଲ୍ ବୋଣ୍ଡ ମୁଖୀ ପାସେଞ୍ଜରର ସିଟି

ଆକାଶେ ତାହାର ମେଘ ଯଦ ଭୁଲେ ଉଏଁ
ବାଉଅର୍ ଶଫ୍ର ମୌସୁମୀ ବାୟୁ ଲଗି
ବର୍ଷା ଝରଇ ଯେବେ
କେବେ ଖୁଦାର ଆଶିଷ ସମ
ସେ ବର୍ଷାଧାରା ନାହିଁ ଛୁଇଁପାରେ ତପ୍ତମାଟିର ବୁକୁ
ଷ୍ଟାଟେସ୍ ପିଅର୍ ର ଶୁଷ୍କ ଝଞ୍ଜା ଆସି
ଊର୍ଦ୍ଧ୍ୱ ଆକାଶେ ଶୋଷି ନିଏ ତାରେ ଯାଇ
ବାରାଙ୍ଗନାର ଭ୍ରୂଣହତ୍ୟାର ସମ ।......

ସୁରେନ୍ଦ୍ର ମହାନ୍ତି କହିଲେ—ଫାଣ୍ଟାସ୍ଟିକ୍ ।

ବାସ୍ତବତା (Realim) ନମଃ ଡାଡ଼ାଇଜମ୍ (Dadaism) ଆଡ଼କୁ ଝୁଙ୍କି ଯାଉଥିବା ମୁଁ ଅନୁଭବ କଲି । ବିଦେଶୀ ଶବ୍ଦ, ବ୍ୟାକରଣସମ୍ମତ ଶବ୍ଦଗୁଡ଼ିକର ନୂତନ ପ୍ରୟୋଗ କେତେଟା ଅସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି କରେ । ଡାଡ଼ାଇଜମ୍ ଗୋଟାଏ ଫ୍ରେଞ୍ଚଶବ୍ଦ—ଏହାର ଅର୍ଥ Hobby Horse—ଖେଳାର ଘୋଡ଼ା । ଟେଲିଗ୍ରାଫିକ୍ ଶବ୍ଦ, ଲଜ୍ଜ୍ୟାଜନକ ଶବ୍ଦ, ସେକ୍ସ ଭାଇଓଲେନ୍ସ୍ ରୂପକଳ୍ପ, ଟାଇମ ପ୍ରତି ହାର୍ଦ୍ଦିକତା—ଏକ ପ୍ରକାର ବେପରୁଆ ଭାବ—ଖିଆଲ୍ ଖେଳ କବିର ।

ସମସ୍ତ ସତର୍କତା ସତ୍ତ୍ୱେ ଏକ ଅପରିଚ୍ଛନ୍ନ ପରିବେଶ ଡାଡ଼ାଇଜମ୍ ସୃଷ୍ଟି କରିଦିଏ । ଗୋଟାଏ ଉଦାହରଣ :

ଦୁଇ ଧାରେ ତୁମ ହର୍ମ୍ୟ ଚୁମ୍ବଇ ନଭ
ତଳେ ଶ୍ୱାସରୋଧ କରେ ନର୍ଦ୍ଦମା ଜଳ
ତମିର ଧ୍ୱନିତ ଧ୍ୱଂସ ଗାନେ ।
ପାଇଖାନା ତଳେ
ପ୍ରେତାତ୍ମା ସମ ତହିଁ

ଛପି ବସିଥିଲେ ମଣିଷ ଶିକାର ଲୋଭେ
କଣ୍ଠନାଳୀର ରକ୍ତ ଲୋଲୁପୀ ହଜର ଉକାପୁତ
ନିଶ୍ୱାସେ ତା'ର ଯେଉଁ ହତ୍ୟାର ସ୍ୱର

ଆଜ ନାହିଁ ଶୁଣ ହେ ଧୂସର ରାଜପଥ ।
ବାରୁଦର ଗନ୍ଧେ ଧୂମାୟିତ କରି ବାୟୁ
ବାରାଙ୍ଗନାର ସ୍ୱର ଅଭିମୁଖେ
ଶୀର୍ଣ୍ଣସ୍ୱାସ୍ଥ୍ୟ ଲମ୍ପଟ ଯାହା ଗାଏ ?

[ ହେ ଧୂସର ରାଜପଥ !—ନୀଳଚନ୍ଦ୍ରର ଉପତ୍ୟକା ]

ନର୍ଦ୍ଦମା, ପାଇଖାନା, ମଶା, ଉକାପୁତ, ବାରୁଦ ଗନ୍ଧ, ଲମ୍ପଟ, ବାରାଙ୍ଗନା ଇତ୍ୟାଦିର ପରିବେଶ ଦ୍ୱାରା ନିମ୍ନରୁଚିର ବାତାବରଣ ସୃଷ୍ଟି କରି ଏଥିପାଇଁ ଅନ୍ୟ ଏକ ଶ୍ରେଣୀକୁ ଦାୟୀ କରା ହୋଇଛି—ଯେଉଁମାନେ ଶିଶୁଙ୍କୁ କଣ୍ଟକର ମୁକୁଟ ପିନ୍ଧାଇ ଦେଲେ—ସେମାନଙ୍କୁ । 'ରାନ୍ତି' କବିତାରେ କେତୋଟି ଗୋପନୀୟତା କୁରୁଚି ବହିର୍ଗତ କରାଯାଇଛି—ଯେପରି—"କରୋସିନ୍ ପ୍ରଦୀପର ପାଣ୍ଡୁର ଆଲୋକେ / ଖାଦ୍ୟପ୍ରାଣ (ଭିଟାମିନ୍) ଅଭାବରେ ଅନୁପୁଷ୍ଟ ଅଙ୍ଗ ମେଲଦେଇ / ଗୃହିଣୀ ଚଳାଏ ତାର/ନିଃସଂକୋଚ ତମିସ୍ରା ବିଳାସ ।" ଏ ବିଷୟରେ ସଚେତନ କରାଇ ଦେଲେ ଚିନ୍ତାମଣି ପାଣିଗ୍ରାହୀ ତାଙ୍କର 'ଆଧୁନିକ କବିତା' ପୁସ୍ତକରେ । ଝଙ୍କାରରେ ପ୍ରକାଶିତ 'ସିଗ୍ନୋସ୍ପ' କବିତାର ଏକ ପଙ୍କ୍ତି ପ୍ରତି ସେ ବିମୁଖ ହୋଇଗଲେ । ମାନସିଂହ—ମୋତେ ବିଦ୍ରୂପ କରି କହିଲେ ଯେ ମୁଁ ତାଙ୍କ ପ୍ରତି 'କାମୁକ କବି' ଆଖ୍ୟା ପ୍ରୟୋଗ କଲାବେଳେ—ମୁଁ କିପ୍ରକାର କବି ? ସେ ଚିନ୍ତାମଣି ପାଣିଗ୍ରାହୀଙ୍କ 'ଆଧୁନିକ କବିତା'ରେ ମୋ ବିଷୟ ଲିଖିତ ଅଧ୍ୟାୟଟି ମେଲି ଧରିଲେ । ଶ୍ରୀମନ୍ତ ମାନସିଂହ ଉପସ୍ଥିତ ଥିଲେ । ୧୯୫୧ରେ ଗଙ୍ଗାଧର ମେହେର କଲେଜରେ ସେତେବେଳେ ମାନସିଂହ ଅଧ୍ୟକ୍ଷ । ମୁଁ ଗୋଟାଏ ବେଳର ଅତିଥି । 'ସିଗ୍ନୋସ୍ପ' କବିତା ସଙ୍କଳନର ମୁଦ୍ରଣ ବେଳେ 'ସିଗ୍ନୋସ୍ପ' କବିତାର ସେଇ ପଙ୍କ୍ତିଟିରୁ ମୁଁ ଉଠାଇ ନେଇଥିଲି ଦୁଇଟି ଶବ୍ଦ । ପଙ୍କ୍ତିଟି ହେଲା 'ତୁମ ନିମ୍ନ ଅଙ୍ଗର ମସୃଣ ଉଗ୍ରତା' । ପରିବର୍ତ୍ତିତ ପଙ୍କ୍ତିଟି 'ତୁମର ମସୃଣ ଉଗ୍ରତା' ।

ରୋମାଣ୍ଟିସିଜମ୍‌ର ପ୍ରତିଦ୍ୱନ୍ଦୀ କଣ ରିଆଲିଜମ୍‌ ? 'ସହକାର'ରେ ମୁଁ 'ହେମନ୍ତ' ଶୀର୍ଷକ ଏକ କବିତା ପ୍ରକାଶ କରିଥିଲି । ଏହାର ଆଭିମୁଖ୍ୟ ଶେଲିଙ୍କ Ode to waste wind ର ଅନୁରୂପ । ପ୍ରକୃତି ମଧ୍ୟରେ ନିହିତ ଧ୍ୱଂସକାରୀ ଶକ୍ତିକୁ ଉଦ୍‌ବୋଧନ ଏବଂ ସୃଜନ ପାଇଁ ବାର୍ଜଫରିସ୍ତ—ଭବିଷ୍ୟତର ସ୍ୱର୍ଣ୍ଣଯୁଗର ସ୍ୱପ୍ନ—ରୋମାଣ୍ଟିସ୍ତ । ଏ କବିତାଟି 'ଡଗର'ରେ ଲକ୍ଷ୍ମୀକାନ୍ତ ମହାପାତ୍ର ତାରିଫ୍‌ କରି ମନ୍ତବ୍ୟ ଦେଇଥିଲେ—ବିନୋଦ ବାବୁ ହେମନ୍ତରେ ଗରମ୍‌ ହୋଇଯାଇଛନ୍ତି । ତଥାପି ଏଥିରେ ମନଭିବୋଧ ନଥିଲା—ଯେତେଟା ଥିଲା 'ସପ୍ତସ୍ୱପ' କବିତାରେ । କାରଣ—ଆମେ ଯାହାକୁ କାବ୍ୟିକ ବାସ୍ତବ କହୁଁ—ତାହା ପ୍ରକୃତ ବାସ୍ତବର ଅନୁରୂପ (ଫଟୋଗ୍ରାଫି) ନୁହେଁ ପ୍ରକୃତ ବାସ୍ତବରେ ଅନେକଟା ଅରୁଚିକର, ଅସ୍ୱାସ୍ଥ୍ୟକର, ଅଦରଣୀୟତା ରହିଛି । କବି ବା କଳାକାରଙ୍କୁ ବାସ୍ତବରୁ କେତେଟା ବାଦ୍‌ (eliminate) ଦେଇ ବାକୀ ଅଂଶ କୁ ଗ୍ରହଣ (select) କରିବାକୁ ପଡ଼େ । ତାହାର କଳାର କିଛି ନାନ୍ଦନିକତା ରଚନା ମଧ୍ୟରେ ମିଶ୍ରିତ ହୋଇଯାଏ ବାସ୍ତବରୁ କାବ୍ୟିକ ବାସ୍ତବତା ମଧ୍ୟରେ ମାନସିକ ଦୂରତ୍ୱ (psychic distance) ଏହାର କାରଣ । ରୋମାନ୍‌ସ ମଧ୍ୟ ହେଉଛି 'magic of distance', ଦୂରତ୍ୱର ମାୟା । ସେଇଥିପାଇଁ ଦୂର ବାଜଣା ସୁନ୍ଦର—ଦୂର ପର୍ବତ ସୁନ୍ଦର—ଦୂରତ୍ୱ (distance) କାବ୍ୟିକ ବାସ୍ତବତାକୁ ସୌନ୍ଦର୍ଯ୍ୟ ହେଉଥିବାରୁ କେତେକାଂଶରେ ରୋମାନ୍‌ସ ନିକଟରେ ଋଣୀ । କବିତାରେ 'ବସ୍ତୁବାଦ'ଏଇଥିପାଇଁ ରୋମାଣ୍ଟିକ୍‌ ହୋଇଯାଏ—ନଚେତ୍‌ ପ୍ରଚାର (propaganda) ପାଲଟି ଯାଇ କାବ୍ୟ ଜଗତରୁ ନିର୍ବାସିତ ହୁଏ ।

ସୁତରାଂ ଅକାବ୍ୟିକ ଶବ୍ଦ ଗୁମ୍ଫନ ପରିତ୍ୟାଗ କରି ମୁଁ ଇନ୍ଦ୍ରିୟଘନ କବିତା ରଚନା କଲି । ରୋମାଣ୍ଟିକ୍‌ କବିତାରେ ସ୍ୱପ୍ନାବେଶ ସୃଷ୍ଟି ହୁଏ । ମୋର 'ହୈମନ୍ତୀ' କବିତା ସଂଅସ୍ତନର ଅଧିକାଂଶ ରୋମାଣ୍ଟିକ ଧର୍ମୀ । ରସଘନ କବିତା ଇମ୍ପ୍ରେସନିଷ୍ଟିକ୍‌ ବା ଅନୁଭବଧର୍ମୀ । ରୂପ ରସ ଗନ୍ଧ ସ୍ପର୍ଶ ମଧ୍ୟମରେ ଏକ ସୁଖାବେଶ ରଚନା କରି ମନ୍ମୟତାକୁ ପରିହାର କରିବା ଏହାର ଆଭିମୁଖ୍ୟ । 'ହୈମନ୍ତୀ'ରୁ ଉଭୟର ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା :—

ରୋମାଣ୍ଟିକ ବା ସ୍ୱୈରବାଘ !

ବର୍ଷଣ ମୁଖର କଦଂବ ବନେ
କିଏ ଫେରେ ଏଥେ କାର ଅନ୍ୱେଷଣେ
ଧୌତ ଅଲକ୍ତକ ସିକ୍ତ ପ୍ରାଂତେ
ନୂପୁର ନାଦେ
ନବବରଷଣେ, କଦଂବ ବନେ ।
ବତାସ ସଘନ ଚଳେ ସନ ସନ ସଚକିତ
ଆକାଶରେ ବର୍ଷୁକ ଜଳଦ ଜାଲ,
ସଜଳିତ ବେଶବାସ ମୁକୁଳିତ କେଶ ପାଶ
ଛିନ୍ନ ଦଳିତ ଦଳ ମାଳତୀମାଳ ।
ଚଳୁଚଳ ଶିହରିତ
ନବଭରଷଣେ । କଦଂବ ବନେ ।

[ ବର୍ଷାଗମ]

ପ୍ରକୃତି ନିର୍ଭର ସମ୍ବେଗ, ଗୀତିମୟତା ଓ ଏକ ବିଷାଦମୟ ରହସ୍ୟର ବାତାବରଣ ସୃଷ୍ଟି କରିବାପାଇଁ ଏଠାରେ ଚେଷ୍ଟା କରାଯାଇଛି, ଯାହାକି ଏକ ମନୋମୟ ଜଗତର ଚିତ୍ରାବଲମ୍ବନ ।

ଇମ୍ପ୍ରେସନିଷ୍ଟ ବା ଭାବାବେବୋଧ :

ହଂସ ମୁଁ ତୁମେ ବନହଂସୀ ଥିଲ
ସଂଶୟେ ବିତ ପରଶଂସି ଥିଲ ।
ମାନସପଥରେ ତୁମେ ଶୁଭ୍ରତୁଷାର ଦ୍ରୋଣୀ
ଗିରି ଝରଣାର ଅବତଂସୀ ଥିଲ ।
ବେଣୀ ବିନ୍ୟାସେ ତୁମ
ଛନ୍ଦ ଥିଲା
ବାହୁତଳେ ମୃଗନାଭି
ଗନ୍ଧ ଥିଲା
ଅଞ୍ଚଳ ଚଞ୍ଚଳ ପବନେ, କାଞ୍ଚୁଳୀର
ଅନ୍ତରାଳେ ବି ମୀଗାବନ୍ଧ ଥିଲା ।

କଣ୍ଠେ ମୋ ବନ୍ଧୁ ! ମୃଦୁ
ପଦ୍ୟଥିଲା
ଓଷ୍ଠେ ବି ଚୁମ୍ବ ମଧୁ
ମଦ୍ୟଥିଲା
କେତକୀର ପାଖୁଡ଼ାରେ ସ୍ନିଗ୍ଧହାସ କଣ୍ଟକ
ଦନ୍ତର ରୁଚି ଅନବଦ୍ୟ ଥିଲା ।
[ହଂସୀ ଥିଲା]

ଇନ୍ଦ୍ରିୟାନୁଭୂତିକୁ ଅନୁଭବ ସମନ୍ୱିତ କରିବା ହିଁ ଏହାର ଲକ୍ଷ୍ୟ । ଇମ୍ପ୍ରେସନିଷ୍ଟିକ୍ ଆର୍ଟ ସଂପୃକ୍ତ ପ୍ରବନ୍ଧ 'ଆରମ୍ଭ'ରେ ପ୍ରକାଶ କରିବା ବିଷୟ ଆଗରୁ ମୁଁ ଉଲ୍ଲେଖ କରିଛି । କିନ୍ତୁ ଉପରୋକ୍ତ କବିତା ରଚନା ସମୟରେ ଏହାର ତତ୍ତ୍ୱ ମୀମାଂସା ଉପରେ ମୋର ଧାରଣା ନଥିଲା । ମୋର ରୁଚି ଦିଗରୁ ଦୃଷ୍ଟିରୁ କବିତାଟି ପ୍ରତି ମୋର ଅନୁରକ୍ତି ବେଶୀ ଅନୁଭବ କରି ଆପାତତଃ ଏଇ ଆଲୋଚନା ସମୟରେ ତାହାହିଁ ଉଲ୍ଲେଖ କରୁଛି ।

ଇମ୍ପ୍ରେସନିଜମ୍ ଚିତ୍ର ଜଗତରେ ଆରମ୍ଭ କରନ୍ତି ମନେଟ୍ ଏବଂ ରେଁନୋଆ ଇଉରୋପରେ ଊନବିଂଶ ଶତାବ୍ଦୀର ଶେଷଭାଗରେ । ମୌଳିକ ଉଜ୍ଜ୍ୱଳ ରଙ୍ଗ ଦେଇ ଏମାନେ ତ ଆଦୃତ ଅନେକ ଚିତ୍ର ଅଙ୍କନ କରୁଥିଲେ ଅନେକ ଇଉରୋପୀୟ ବିଶେଷ କରି ଫରାସୀ କବି କାବ୍ୟ ମାଧ୍ୟମରେ ଏହାର ପ୍ରୟୋଗ କଲେ । ଇମ୍ପ୍ରେସନିଜମ୍ର ଆଦୃତ କେତୋଟି ଉଦାହରଣ :

ତୁମରି କବରୀ
ସମ କଳା
ଆସିଥିଲା
ଦୂରେ ବିଭାବରୀ
ଗହନ ଓ ସ୍ତବ୍ଧ,
ତୁମରି ହାତର
ଆଭରଣ ଠୁଂ ଠାଂ ଶବ୍ଦ
ସମ ଶୁଭୁଥିଲା

ଯେବେ ଝରୁଥିଲା ଜଳ
ଛଳ ଛଳ, କଳ କଳ
କେତେ ଅବିରଳ ।



ମହାଳସାନଗରୀର ଧାରେ
ତୁମ କାନ ଦୁଲ ମୋତିଆଭାପରି
ଜ୍ୟୋତିରିଙ୍ଗଣର ଲୀଳା
ଚାଲିଥିଲା
ବାଞ୍ଜାର ବନେ,
ତୁମେ ଆନମନେ
ତୁମରି ପଣତ କୋଣେ
ରଖି କରତଳେ
ରଙ୍ଗୀନ ସୂତାରେ ଯେ
ଲେଖି ରଖିଥିଲ
ମୋ ନାମର ଦୁଇଟି ଅକ୍ଷର ।



ତୁମରି
ପାଲଟା ଶାଢ଼ୀର
ଉତ୍ତପ୍ତ ସୌରଭ ପରି
ଟଙ୍ଗଣିଜଳର
ଭିଜାଗନ୍ଧ ଉଠିଥିଲା ଭରି
ମାଳଞ୍ଚ ଘରିଣୀ ପରି
ଶସ୍ୟ କ୍ଷେତପାରୁ
ପତଙ୍ଗର ଗାନ ଶୁଭୁଥିଲା
ପ୍ରେମନ୍ତନ ପରି ଅବିକଳ ।

[ମାଳଞ୍ଚ—ମାଳଚନ୍ଦ୍ର ର ଉପତ୍ୟକା ]

ରୂପ ରସ ଗନ୍ଧ ବର୍ଣ୍ଣ ଓ ସ୍ୱାଦର ଆଭାସ ଦ୍ୱାରା ପାଠକ ମନ ମଧ୍ୟରେ ଇନ୍ଦ୍ରିୟାନୁଭୂତିକୁ ସଞ୍ଚରିତ କରିବା ପାଇଁ ବିଭିନ୍ନ ରୂପ କଳ୍ପର ଅବତାରଣା ଏଠାରେ କରାଯାଇଛି ।

'ନୀଳଚନ୍ଦ୍ର ଉପତ୍ୟକା'ର 'ପ୍ରିୟା' ଓ 'ବେଦୁଇନ୍ ଦେଶେ' ଦୁଇଟି କବିତା ଏହି ପର୍ଯ୍ୟାୟର ! ଅନ୍ୟାନ୍ୟ କବିତା ସଂକଳନ ମଧ୍ୟରେ ଯେ ପୃଥକୀକରଣ ସଜ୍ଞାନ ମନ ନେଇ କରାଯାଇଛି—ଏପରି ନୁହେଁ, ବରଂ ମନ ଭିତରେ ପରିବର୍ତ୍ତିତ ରୁଚିର ଉଦ୍‌ଗମନ ହିଁ ବିଭିନ୍ନ ଆଙ୍ଗିକ ପରିଗ୍ରହଣ ପାଇଁ ଦ୍ୟୋତନା ଦେଇଛି । ବର୍ଗୀକରଣ କଥା କଦାପି ମନକୁ ସ୍ପର୍ଶ କରିନାହିଁ ।

ଇମ୍ପ୍ରେସନିଜମ୍‌ର ରମଣୀୟ ଇନ୍ଦ୍ରିୟାନୁଭୂତ କଳ୍ପନା ନାରୀ ସ୍ୱଭାବାପନ୍ନ ପରି ମନେହେଲା, ବିଶେଷତଃ ସଚ୍ଚିଦାନନ୍ଦ ରାଉତରାୟଙ୍କ ବସ୍ତୁବାଦୀ ବଳିଷ୍ଠ ବିଷୟବସ୍ତୁ ଏବଂ ପୌରୁଷମୟ ଶୈଳୀ ନିବନ୍ଧର ସମ୍ମୁଖରେ । ତେଣୁ ଫରାସୀ ସାହିତ୍ୟରେ ଏ ବିଷୟରେ ଲିଖିତ ବିଭିନ୍ନ ପୁସ୍ତିକା ତଥା ଏନ୍‌ସାଇକ୍ଲୋପିଡ଼ିଆ ବ୍ରିଟାନିକା ମୋର ଧ୍ୟେୟ ହେଲା । ଟମାସ୍ ହାର୍ଡ଼ି ଏବଂ ଏ.ଇ. ହାଉସମାନ୍ ଏ ଦିଗରେ ଇଂରାଜୀ କବିତାରେ ବହୁ ଚେଷ୍ଟା କରିଛନ୍ତି ; କିନ୍ତୁ ଇଂରାଜୀ ସାହିତ୍ୟର ଇତିହାସରେ ଏଇସବୁ 'ଇଜମ୍'ର ବିଶେଷ ଆଲୋଚନା ମୁଁ ପାଇଲି ନାହିଁ । ଡ଼ି.ଏଇଚ୍. ଲରେନ୍‌ସ୍ ମୋର ପ୍ରିୟ ଔପନ୍ୟାସିକ, ସେ ପରୁଷ ଅବଚେତନା ନେଇ ତାଙ୍କ ଉପନ୍ୟାସରେ ଯାହା ଲେଖିଲେ, ତାହା ଏକ୍‌ସପ୍ରେସେନିଷ୍ଟ ପର୍ଯ୍ୟାୟର । ଏକ୍‌ସପ୍ରେସିନିଜମ୍ ଅର୍ଥାତ୍ ଅଭିବ୍ୟକ୍ତିବାଦ ନେଇ ଇଉରୋପରେ ଅନେକ ଧରଣର କଳାଶିଳ୍ପ ଆନ୍ଦୋଳନ ହୋଇ ଯାଇଛି—କିନ୍ତୁ ଏକ୍‌ସପ୍ରେମିନିଜମ୍‌ର ଜନ୍ମସ୍ଥଳ ଜର୍ମାନୀ । ଏହାର ମୂଳ ଲକ୍ଷ୍ୟ ରଚନାରେ ବିକାର (Distortion) ଏବଂ ଅତିରଞ୍ଜନା (exaggeration) ନେଇ ଲକ୍ଷ୍ୟ ଆତ୍ମପ୍ରକାଶ କରିବ । ଏଥିରେ ସ୍ୱୈରବାଦୀ ବା ରୋମାଣ୍ଟିକମାନଙ୍କ ସମ୍ବେଗର କ୍ରମ ପରିଣାମ ନାହିଁ, ବା ଇମ୍ପ୍ରେସନିଷ୍ଟମାନଙ୍କ ଇନ୍ଦ୍ରିୟ ଘନ ରୂପକଳ୍ପ ନାହିଁ, ରହିଛି ନାନା ଅସଂଲଗ୍ନତା ମଧ୍ୟରେ ଏକ ନାଟକୀୟ ପ୍ରଚଣ୍ଡତା । ଫରାସୀ ଚିତ୍ରଶିଳ୍ପୀ ହାର୍ଭେ ଏହାର ପରୀକ୍ଷା ନିରୀକ୍ଷା କରିଥିଲେ ; କିନ୍ତୁ ଜର୍ମାନୀରେ ଏହା ସଫଳ ପ୍ରୟୋଗ ହୋଇଥିଲା । ଫ୍ରାନ୍‌ସରେ ଏହା ଫବିଜମ୍, ସ୍ପେନ୍‌ରେ କ୍ୟୁବିଜମ୍, ଇଟାଲୀରେ ଫିଉଚୁରିଜମ୍

ପର୍ଯ୍ୟାୟରେ ଏକ୍‌ସପ୍ରେସେନିଜମ୍‌ର ବିଭିନ୍ନ ଦୃଷ୍ଟିକୋଣରୁ କଳା ତଥା କବିତାରେ ପ୍ରୟୋଗ କରାଯାଇଥିଲା । ବସ୍ତୁବାଦରୁ ଓହରି ଗଳ୍ପରେ ସଚ୍ଚିରାଉତରାୟ ଅତ୍ୟନ୍ତ ସ୍ୱାଂସ୍ୱଭାବରେ ଏ ସବୁର ବ୍ୟବହାର କରିଛନ୍ତି । ତାଙ୍କର ପାର୍ଶ୍ୱ ପରିବର୍ତ୍ତନର ଦ୍ରୁତତ୍ୱ ଏବଂ କାବ୍ୟ ଶିଳ୍ପ କର୍ମରେ ପାର୍ଶ୍ୱିଳମ୍ୟ ତାଙ୍କ ପାଠକ ବର୍ଗଙ୍କୁ ବିହ୍ୱଳ କରିଦିଏ । ଏ ସମସ୍ତଙ୍କୁ ଆତ୍ମସ୍ଥ କରି; କିନ୍ତୁ ନିଜର ରଚନା ପଦ୍ଧତି ସହିତ କେତେଟା ସାମିଲ୍ କରାଯାଇ ପାରେ ସେ ଦିଗରେ ମୁଁ ବ୍ୟସ୍ତ ରହିଲି ।

ଫରାସୀ ଫବିଜମ୍ (Fabigism) ବା ପାର୍ଶ୍ୱସନ୍ତ୍ରୀବାଦର ଜୀବନକାଳ ମାତ୍ର ଗୋଟାଏ ବର୍ଷ ୧୯୦୫—୭ । ଚିତ୍ରଶିଳ୍ପୀଗଣ ବିଷମ ଓ ଜାନ୍ତବ ରଙ୍ଗ ଦ୍ୱାରା ବାସ୍ତବିକ ଗତିବାନ ରୂପ ଦେବାକୁ ପ୍ରଚେଷ୍ଟା କରିଥିଲେ । ଏଠାରେ କବି ଆବେଗକୁ ଆଗରେ ରଖି ଯୁକ୍ତିକୁ ଅବହେଳା କରୁଥିଲେ । ସଚ୍ଚିରାଉତରାୟଙ୍କ କବିତାରୁ ଏକ ଉଦାହରଣ—ଶିଶିର ଶିଶିର ନିଭ୍ର ନଭରେଖା, ଚିତ୍ର ମରାଳ ମିଥୁନରେ ନବମାତ ଉଷା ଧୋଇଦେବା ଆଗୁଁ ସ୍ୱପ୍ନ ସଙ୍କେତ ସନ୍ତକରେ ଶୋଇପଡ଼ି ଦେଖି ମୃଣାଳଦେହୀ ଦେହ ଜାହ୍ନବୀ ଉପକୂଳେ ତୃଣ ତରଙ୍ଗ ସଂକୁଳ ତଟେ ଶାନ୍ତ ପ୍ରେମର ମଫସ୍ୱଲେ ।

[ଏଇ ଶର୍ଯ୍ୟାର ମୁହୂର୍ତ୍ତରେ]

ଏଠାରେ ଅର୍ଥ ନିରର୍ଥକ—ଯୁକ୍ତି ପରାହତ । କେବଳ ଗୋଟାଏ ଆବେଗ ଅନୁଭବ କରାଯାଏ ।

ମୋର 'ଏକ ସଞ୍ଚୟ' କବିତାରୁ ଅନ୍ୟଏକ ଉଦାହରଣ—

କଣ୍ଟକ ବାହୁରେ
ଯେବେ ମୁଁ ହୁଏଁ ରକ୍ତପ୍ଲାବୀ
ବାଦାମୀ ଶରୀର ନେଇ
ମୁଁ ଯଦି ହୁଏଁ ଶରଶଯ୍ୟାରେ
ସୂର୍ଯ୍ୟତପା

ତୁମେ ପଲ୍ଲବୀ ଶାଖାର ସ୍ନେହ ନେଇ
ଏକ ଫୁଲର ବଳ୍ଲଶ୍ରୀ ରୂପ ନେଇ
ରୂପସୀର ନାଭି ଘ୍ରାଣ ନେଇ
ମୋ ଉପରେ ନଇଁ ପଡ଼ ।

ପ୍ରେନସ୍ କ୍ୟୁବିଜମ୍ (୧୯୦୯-୧୮)ର ଲକ୍ଷ୍ୟ ହେଲା ଇନ୍ଦ୍ରିୟାନୁଭୂତ ବସ୍ତୁକୁ ବକ୍ରୀକୃତ କରି ଥୋଇବା । କେବଳ ଘନବସ୍ତୁ ବା ଘନକ୍ଷେତ୍ର (Cube) ମଧ୍ୟରେ ମାନସିକ ପ୍ରକ୍ରିୟା ଦ୍ୱାରା ମୂର୍ତ୍ତି ସଂଲଗ୍ନ କରିବା ଏହାର ଲକ୍ଷ୍ୟ । ଚିତ୍ର ଶିଳ୍ପରେ ପିକାସୋ ଏହାର ସଫଳ ସ୍ରଷ୍ଟା । ଅଜିତ କେଶରୀ ରାୟ ଖଲ୍ଲିକୋଟ ଆର୍ଟସ୍ କଲେଜରେ ଅଧ୍ୟକ୍ଷଥିବା ସମୟରେ ଏହି ପଦ୍ଧତିରେ କଳା ଶିକ୍ଷା ଛାତ୍ରମାନଙ୍କୁ ପ୍ରଦାନ କରୁଥିଲେ । ମୁଁ ଏହାର ସାମାନ୍ୟ କିଛି ପ୍ରୟୋଗ କରିଥିଲି :—

ଖଣିଜ ରଙ୍ଗର
ଏ ସାଗର
ହୁଏତ ମୋର
ଅତୀତ ସମ
ଦିଗନ୍ତ ବିସ୍ତାରିତ
ହୁଏତ ବା
ମୋର ଭବିଷ୍ୟତସମ
ତରଙ୍ଗ ଚକିତ
ତୁମେ କିନ୍ତୁ
ଏ ସାଗର ତଳର
ଗଭୀର ସାଗର
ତଳର
ଶିଳା ସଂକ୍ରାନ୍ତରେ
ମାଛର ବିଦ୍ୟୁତ୍ ।
[ଫସିଲ୍ ନୁହଁ—ସମ୍ପ୍ରତି । ]

'ଶିଳା ସଂକ୍ରାନ୍ତି'ରେ ମାଛର ବିଦ୍ୟୁତ୍—ଉପମାଟି ଖ୍ରୀମ ଘୋଷଙ୍କ ଉପରେ ପ୍ରକ୍ଷେପ କରାଯାଇଛି । ବାକ୍ୟଟି ଅନିୟମିତ ରୂପେ ଗଠିତ ଏବଂ ତା' ଉପରେ ଭୌତିକତାର ପ୍ରଲେପ ଦିଆଯାଇଛି । କ୍ୟୁବିଜିମ୍ ବା ଘନ ବସ୍ତୁବାଦ କେତେଟା ଶାଶ୍ୱତଧର୍ମୀ—ଚିତ୍ରକଳୋଦ୍ଦିଷ୍ଟକାବ୍ୟ ପରି । ବସ୍ତୁକୁ ଅଗ୍ରପଶ୍ଚାତ ଉପରୁ ତଳ ଦେଖିବା ଏହାର ଧର୍ମ । ଫିଉଚରିଜମ୍ ଦେଖାଦେଇଥିଲା ଇଟାଲୀରେ ୧୯୦୯ । ଏହାର ପ୍ରବକ୍ତା ଥିଲେ କବି ମାରିନେଟ୍ଟି ଏବଂ କବି ଫଲପୋନୋ । ଏମାନଙ୍କର ସ୍ଲୋଗାନ୍ ଥିଲା—ରୂପକଳ୍ପରେ ନୂତନ ମୌଳିକତା, ପ୍ରଚଳିତ ରୁଚି ବିରୁଦ୍ଧରେ ଅଭିଯାନ ଏବଂ ଯୁଗର ଜୀବନ୍ତ ବାସ୍ତବ ଅଙ୍କନ । ମୋତେ ଏହା ବିଶେଷଭାବରେ ଆକର୍ଷଣ କରିଥିଲା । ମୋର 'ଆକାଶ ପଥିକର ଆତ୍ମକଥା', 'ମହାସାଗରର ଗ୍ରାସ' ଇତ୍ୟାଦି କବିତାରେ ମୁଁ ଫିଉଚରିଜମ୍ ବା ଆଗାମୀତ୍ୱକୁ ରୂପ ଦେବାକୁ ପ୍ରୟାସୀ ହେଲି ।

ଆଣ୍ଡିଜ ଶୈଳ ଶ୍ରେଣୀର ଶିଖରେ ଶିଖରେ
ସନ୍ଧ୍ୟାର ବର୍ଷଣ ମେଘ ନଇଁ ଆସେ
ଅବଲୀଳା କ୍ରମେ
ଦୂର ଆଗ୍ନେୟ ଶୃଙ୍ଗର ଲୋହିତାଭ ଶିଖା ଦେଖି
ବନ୍ଦରର ଯୋଜନ ଅନ୍ତରେ
ନଙ୍ଗର ପକାଇ
ହାଙ୍ଗର ଶିକାରୀ ପୋତ ନଅଇ ବିଶ୍ରାମ ।
ଉଦ୍‌ଗିରିତ ଗନ୍ଧକର ସଂକ୍ରମିତ ବାୟୁସ୍ତର ଛୁଇଁ
ଚଳେ ମୁହିଁ ବିମାନ ଆରୋହୀ
ପରିଣତ ଫଳଶ୍ୟାମ ପାଇନ୍ କାନନରେ
ଝରିପଡ଼େ ବର୍ଷା ଟ୍ରପିକର ।
[ନନ୍ଦୀଦେବୀ]

ଆଧୁନିକ ଜୀବନଯାପନର ବିଜ୍ଞାନ ନିର୍ଭର ଚିନ୍ତା, ଶିଳ୍ପ ସମାଜରେ ଯନ୍ତ୍ରସହ ମଣିଷର ଅବାରିତ ସଂଘର୍ଷ ଏବଂ ପରାଜୟ, ଯୋଜନା ଓ ସମନ୍ୱୟର

ଅସହଯୋଗ ମୋର ବହୁ କବିତାରେ ରୂପାୟିତ । ମାୟାଧର ମାନସିଂହ ଏ କବିତାର ଇଂରାଜୀ ଅନୁବାଦ କରି କହିଥିଲେ ଯେ ସୁନ୍ଦରଗଡ଼ର ପ୍ରକୃତି ବିଚିତ୍ର ପରିବେଶ ଛାଡ଼ି ମୁଁ କୁଆଡ଼କୁ ପଳାଉଛି ; କିନ୍ତୁ ଏଇପରି ମାନବିକ ଜୀବନ ସଂଗ୍ରାମର ଚିତ୍ର ବିଭିନ୍ନ ଭୌଗଳିକ ପରିବେଶରେ ରୂପାୟନ ମଧ୍ୟ ହୋଇଛି, ମୋର ବିଭିନ୍ନ କବିତାରେ :—

ହିନଲୁଲୁ ଉପକୂଳେ
ଶାର୍କ ଶିକାରୀ ନାବିକ
ଫେରି ଆସେ,
ଗୁର୍ଖା ସିପାହୀର
ଧର୍ଙ୍ଗୀନ୍ ଗ୍ରେଟ୍‌ପରି
ତେଉର ଗୁଳୁକ୍
ନୌକାମାନଙ୍କେ ବାଜେ ।

[ ରବି-ଶୀଳଚନ୍ଦ୍ରର ଉପତ୍ୟକା ]

ଏରୋପ୍ଲେନ୍ ଯାତ୍ରା ଯେମିତିକି ସୁନ୍ଦରଗଡ଼ର ଦରିଦ୍ର କବିର ଭାଗ୍ୟରେ ନାହିଁ—ବା ହିନଲୁଲୁର କଳ୍ପନା ଉଦ୍‌ଭଟ । ମାନସିଂହ ଜାଣି ନ ଥିଲେ ମୋର କେତେଟା ଆକାଶ ଭ୍ରମଣର ଅନୁଭୂତି ଅଛି ।

ମୋର ହାଇସ୍କୁଲ ଜୀବନର ସର୍ବାର୍ଥ ପାଇଲଟ୍ ମଦନ ବାନାର୍ଜୀ ସହିତ ଟୁ ସିଟର୍ ପ୍ଲେନ୍‌ରେ ମୁଁ ମେଘ ଉପରକୁ ଉଡ଼ିଯିବାର ଏକ ବିଚିତ୍ର ପରିସ୍ଥିତି ଅନ୍ତରଙ୍ଗ କରି ପାରିଛି । କଲିକତାର 'ମେଟ୍ରୋ' ସିନେମାରେ ସେତେବେଳେ ମେରୁପ୍ରଦେଶର ଚିତ୍ର, କଙ୍ଗୋର ଅରଣ୍ୟରେ ଟାର୍‌ଜନ୍‌ଙ୍କ ବନ୍ୟ ଜୀବନ, ଜୁଲ୍‌ସ୍ ଭେର୍ଣ୍ଣଙ୍କର 'ଏ ଟ୍ରିପ୍ ଟୁ ଦି ମୁନ୍,' ଟ୍ୱେଣ୍ଟି ଥାଉଜେଣ୍ଡ ଲିଗ୍‌ସ୍ ଅଣ୍ଡର ଦି ସି, ଇତ୍ୟାଦି ଇତ୍ୟାଦି ବହୁ ଆନ୍ତର୍ଦେଶୀକ ଚିତ୍ର ମୋର କଳ୍ପନାକୁ ଉଦ୍‌ବୁଦ୍ଧ କରିଛି । ସେ ସବୁ ଭିତରେ ମୁଁ ବସୁଧୈବ କୁଟୁମ୍ବକଂର ଅନୁଭୂତି ପାଇବି । କେବଳ ଓଡ଼ିଶା ଭିତରେ ମାନବିକବୋଧକୁ ସୀମିତ କରିବାର ପରିକଳ୍ପନା ମୋର

ଆସିନାହିଁ । ବୋଧହୁଏ ମୁଁ ସତ୍ୟର ଅପଳାପ କରୁନାହିଁ । ଆଜ ଏସବୁ ଅନୁଭୂତ ଅତି ସୁଲଭ, ଯଦିଓ ତାଙ୍କେଙ୍କ ଇନ୍ ଫାର୍ନୋ ବା ସାରଳା ଦାସଙ୍କ ସ୍ୱର୍ଗଦର୍ଶନ ଅତି ବିରଳ । ଏକ୍ସପ୍ରେସ୍‌ନିଜମ୍‌ର ବିଭିନ୍ନ ପର୍ଯ୍ୟାୟର ପରୀକ୍ଷା ଶେଷରେ ଡାଡ଼ାଇଜମ୍‌ରେ ପରିନବ୍ଧିତ ହୋଇ ଯାଉଥିବାରୁ ମୁଁ କ୍ରମଶଃ ପରା-ବାସ୍ତବତା ବା ସୁର୍‌ରିଆଲିଜମ୍ ଆଡ଼କୁ ଆକର୍ଷିତ ହେଲି । ଏହାର ପ୍ରବର୍ତ୍ତକ ଆଁ ଦ୍ରେ ବ୍ରେଁତ୍ ଡାଡ଼ାଇଜମ୍‌ର ନୈରାଜ୍ୟରୁ କବିତାକୁ ମୁକ୍ତ ଦେଖା । ସୁପର-ରିୟାଲିଜମ୍‌ର ପ୍ରକ୍ଷେପଣ ଦ୍ୱାରା ଉନ୍ନତ ବାସ୍ତବକୁ ମଗ୍ନ ଚୈତନ୍ୟରୁ ଆହରଣ କରି ସ୍ୱପ୍ନଂକିପ୍ତ ସ୍ୱତଃସ୍ଫୂର୍ତ୍ତ ପ୍ରତୀକ, ଇତିକଥା ଏବଂ ପୌରାଣିକତା ମାଧ୍ୟମରେ ପ୍ରକାଶ କରିବା ଏହାର ରୀତି । ଏଠାରେ ବସ୍ତୁ ଅପେକ୍ଷା ଚିନ୍ତା ବଡ଼ । ଚିନ୍ତା ଚଳାଏ, ବସ୍ତୁ ଚଳେ । ଜର୍ମାନୀର ଏକ୍ସପ୍ରେସିନିଜମ୍ ମାତ୍ର ଗୋଟାଏ ବର୍ଷ ତିଷ୍ଠି ରହିଥିଲା, ୧୯୧୨ରୁ ୧୯୧୩ ପର୍ଯ୍ୟନ୍ତ । 'ସରୀସୃପ' ଅନ୍ତର୍ଗତ 'ବୃକ୍ଷଠାରୁ'କବିତାରେ ମୁଁ ଏହାର ଶେଷ ପ୍ରୟୋଗ କରିଥିଲି—

ମେକ୍‌ଠାଠ୍ ଡ୍ରେନ୍ ଧୂଳି
ମଶା ମାଚ୍ଛି
ରକ୍ତ ଶବ୍ଦ ମୃତ୍ୟୁଶବ୍ଦ ମଧ୍ୟେ
ବୃକ୍ଷଠାରୁ ସେ ମନ୍ତ୍ର ଶିଖିଛି ।

ବିକୃତ ଶବ୍ଦ ଗଠନ (Distortion) ଅଭୁତରୂପ (Grotosque) ସମ୍ବଳିତ ପ୍ରତୀକ ଏକ ଅଭିବ୍ୟକ୍ତି ଭିତରେ ମୁଁ ନିଜକୁ ସଂହତ ମନେ ନ କରି ବରଂ ସୁର୍‌ରିୟାଲିଜମ୍‌କୁ ଅଧିକ ଭାବବ୍ୟକ୍ତିର ମାଧ୍ୟମ ମନେ କଲି । ଏହାର ବ୍ୟଞ୍ଜନାରେ ଅସଂଲଗ୍ନତା ତ ଅଛି କିନ୍ତୁ ଟା ବୈଜ୍ଞାନିକ ସତ୍ୟ ମଧ୍ୟ ନିହିତ ଅଛି । ମୋର ବହୁ କବିତା ଏଇ ପର୍ଯ୍ୟାୟ ଭିତ୍ତିକ । ଏହାର ଆରମ୍ଭ 'ନୀଳ-ଚନ୍ଦ୍ରଉପତ୍ୟକାର' ନୀଳଚନ୍ଦ୍ର ଉପତ୍ୟକା କବିତା ଏବଂ ଏ ଯାବତ୍ ପରିବ୍ୟାପ୍ତ । ସୁର୍‌ରିୟାଲିଜମ୍‌ର ସ୍ୱର ମୋର ମୁଖ୍ୟସ୍ୱର ଏବଂ ବୃହତ୍ ପରିସର ବ୍ୟାପ୍ତ । ଏତେ ଦୀର୍ଘ ପରୀକ୍ଷଣ ପରେ ବିସ୍ତୀର୍ଣ୍ଣ ଉଦାହରଣ ଦେବା ଅବାଞ୍ଛନୀୟ ମନେ କରି ନିଜକୁ ନିବୃତ୍ତ କଲି । ନୈରାଶ୍ୟ ନିରାକରଣ ପାଇଁ ବସ୍ତୁବାଦୀ କମ୍ୟୁନିଜମ୍ ବିପ୍ଳବ କରେ, ନୈରାଶ୍ୟର ନିରାକରଣ ରୋମାଣ୍ଟିସିଜମ୍‌ରେ ନାହିଁ—ତେଣୁ ଶେଲି

—I fall on the·thorns of life I bleed-I die—କିନ୍ତୁ ଚରମ ଯନ୍ତ୍ରଣାକୁ ସ୍ୱୀକାର କଲେ । ନୈ'ରାଶ୍ୟକୁ ଅତିକ୍ରମଣ କରେ ସୁର୍ ରିୟାଲିଜମ୍—ଏକ ଚରମ୍ପ୍ରତ ଆନନ୍ଦ ଲୋକର ଅନୁସନ୍ଧାନରେ । ମୁଁ ଯନ୍ତ୍ରଣାକୁ ସ୍ୱୀକାର କରେ ; କିନ୍ତୁ ଯନ୍ତ୍ରଣାରୁ ଉତ୍ତରଣ କରିପିବାର ପଥର ନିର୍ଦ୍ଦେଶ ପାଇଁ ସଂକେତର ଅନୁସନ୍ଧାନ କରେ । ଏ ଯନ୍ତ୍ରଣା ବସ୍ତୁବାଦ ଜନିତ ହୋଇପାରେ ବା ସଂସ୍କୃତ ଜନିତ ହୋଇପାରେ ।

୧୯୫୫ ବେଳକୁ ଓଡ଼ିଆ କବିତା ରେ ଏଲିୟଟୀୟ ଦର୍ଶନର ପଦଧ୍ୱନି ଶୁଣାଗଲା । ଇଡନିଫିକେସନ ଅଫ୍ ସେନ୍ସିବିଲିଟିସ୍ ବା ଇନ୍ଦ୍ରିୟାନୁଭୂତିର କେନ୍ଦ୍ରୀକରଣ ନେଇ କବିତା ଲେଖିବାର ପ୍ରବୃତ୍ତି ଦେଖାଦେଲା । ଏକ ବିଚ୍ଛିନ୍ନତା ବାଧା ନୈ'ସଙ୍ଗ୍ୟ କବିକୁ ପୀଡ଼ିତ କଲା ; କିନ୍ତୁ ଏଲିୟଟ୍‌ଙ୍କ ମେଧାବାଦ ମତେ କେତେକାଂଶରେ ପ୍ରଭାବିତ କରିଛି । ମୋର ଶଂସିତ କବିତା ସଞ୍ଚୟନରେ ବୋଧହୁଏ କେତୋଟି ଅନୁରଣନ ଥାଇପାରେ । ମୋର ମେଧାନିର୍ଭର କବିତା କେତେଟା ଦୁର୍ବୋଧ୍ୟ ହୋଇପାରେ—କିନ୍ତୁ ମୋର ବିଶ୍ୱାସ ତୃତୀୟ ପାଠ ପରେ ନିଶ୍ଚୟ ଭାବରେ ସହୃଦୟ ପାଠକ ଅପ୍ରସ୍ତୁତ ହେବେନାହିଁ ।

ମେଧାକୈନ୍ଦ୍ରିକ କବିତା ଅସ୍ତିତ୍ୱବାଦ ବା ଏକ୍‌ସିଟେନ୍‌ସିୟାଲିଜମ୍ ର ପ୍ରଭାବ ଜନିତ । ଏହାର ପ୍ରବକ୍ତା ଯାଁ ପଲ୍ ସାର୍ତ୍ର । ରିୟାଲିଜମ୍-ବା ବାସ୍ତବବାଦ, ମିଷ୍ଟିସିଜମ୍ ବା ରହସ୍ୟବାଦ, ଆଇଡ଼ିଏଲିଜମ୍ ବା ଆଦର୍ଶବାଦ ବିରୁଦ୍ଧରେ ତାଙ୍କ ଅଭିଯାନ । ସେ ଏପରିକି ଈଶ୍ୱର ନିର୍ଭର ନଥିଲେ । ତାଙ୍କ ମତରେ ସତ୍ୟ ମନ୍‌ମୟ । ମଣିଷର ଅସ୍ତିତ୍ୱ ମଣିଷର ପୂର୍ବଗାମୀ । ତାହାର ସଚେତନ ଅବସ୍ଥାରେ ସେ ଆତ୍ମସମୀକ୍ଷା ସ୍ତରରେ ଉପନୀତ ହୁଏ, କେତେଟା ସକ୍ରେଟିସ୍‌ଙ୍କ 'Know Thyself' ଗୋତ୍ରୀୟ । ଏହାପରେ ସେ ବ୍ୟକ୍ତିନିଷ୍ଠ ସମାଜ ଆଗରେ ଦାୟିତ୍ୱ ନେଇ ଦଣ୍ଡାୟମାନ ହୁଏ । ଗୃହଆଡ଼ ଅଯୌକ୍ତିକ ଜୀବନ ସଂଗ୍ରାମର ଭୟାବହତା । ଅନ୍ତର୍ଜୀବନ ତେଣୁ ନୈ'ସଙ୍ଗ୍ୟର ଭୟାବହତାରେ ଆଚ୍ଛନ୍ନ । ଚୈତନ୍ୟହିଁ ଏଠାରେ ଏକମାତ୍ର ମଣିଷର ଆଶ୍ରୟ, ଯାହାର ସହାୟରେ ସେ ଅଜ୍ଞେୟତାକୁ ଉଲ୍ଲଙ୍ଘନ କରିପିବ । ତେଣୁ ଭଗବାନ ଏଠାରେ କଣ କରିବେ ? ଶାଶ୍ୱତ ମୂଲ୍ୟବୋଧ ବା କ'ଣ ଦରକାର ? ଏ ପରିପ୍ରେକ୍ଷୀରେ ମଣିଷ ନିଜେ ହିଁ

ଈଶ୍ୱର । ମଣିଷ ମନରେ ଏଇ ଦାୟିତ୍ୱ ଭାର ବା କମିଟ୍‌ମେଣ୍ଟ ଯେଉଁ ଉଦ୍‌ବେଗ ସୃଷ୍ଟି କରେ, ତା ମଧ୍ୟରୁ ନିଷ୍କୃତି ପାଇବାର ବାଟ ବନ୍ଦ । ଆଉ ଏଇ ଅସ୍ତିତ୍ୱର ପଶ୍ଚାତରେ ମୃତ୍ୟୁଧାରଣା ମଣିଷକୁ ସର୍ବଦା ଉଦ୍‌ବିଗ୍ନ କରି ରଖେ— ଜନ୍ମ ମିଥ୍ୟା, ବସ୍ତୁ ମିଥ୍ୟା, ସତ୍ତା ବି । 'କାଞ୍ଚନ କୁନ୍ତଳାର ତରବାରି' ପର୍ଯ୍ୟ କବିତାଟି ଏହି ଚିନ୍ତାଭିତ୍ତିକ ।

ଅସ୍ତିତ୍ୱବାଦରେ ଘୋଷିତ କର୍କେଗାର୍ଡ଼ କିନ୍ତୁ ଭଗବାନ ବିଶ୍ୱାସୀ ଥିଲେ । 'ଶେଷଦାନ' କବିତାଟିରେ ମୁଁ ଅନେକାଂଶ ତାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଛି । ନିଶ୍ଚିତ ଭାବରେ ମୁଁ ବହୁ ବୈଦେଶିକ କାବ୍ୟଦର୍ଶରେ ପ୍ରଭାବିତ ହୋଇ ସେଇ ଅନୁମାପରେ କବିତାର ପ୍ରତିମା ତଳେଇ କରିଛି । ଛନ୍ଦ ଏବଂ ଶୈଳୀର ମଧ୍ୟ ବିଭିନ୍ନ ପ୍ରକାର ପ୍ରୟୋଗ କରିଛି । ୧୯୭୧ ରେ The Current Indian Literature ରେ ପ୍ରଫେସର ବିଧୁଭୂଷଣ ଦାସ ଏବଂ ପ୍ରଫେସର ଜଗନ୍ନାଥ ମୋହନ ମହାନ୍ତି ଏହି ବିଷୟରେ ମନ୍ତବ୍ୟ ଦେଇଥିଲେ :

"Binod Chandra Nayak…is incessently experimenting on verse pattern."

ତଥାପି ମୁଁ 'ବୈଦେଶିକୀ' କି ? ନିଶ୍ଚୟ ନୁହେଁ ମୁଁ 'ଦୁଷ୍ଟ' ବା ପ୍ରତିକ୍ରିୟାଶୀଳ ନୁହେଁ । ଏ ଏକ ପୁରାତନ ସ୍ୱର ଅବଶ୍ୟ କିନ୍ତୁ ଅନେକ କଣ୍ଠରେ ତା'ର ପ୍ରତିଧ୍ୱନିର ଏ ପ୍ରତିବାଦ । କବିତା ପଛରେ ଏ ଅନୁଧାବନ ସ୍ୱର୍ଣ୍ଣମୃଗ ପଶ୍ଚାତର— କିନ୍ତୁ ମୋର ପ୍ରଚେଷ୍ଟା ପ୍ରହତ ହୋଇନାହିଁ :

ସ୍ୱର୍ଣ୍ଣମୃଗ ହଜେ ସନ୍ଧାନରୁ<br>
ଧାଏଁ ଦୂରତର,<br>
ଅବ୍ୟର୍ଥ ଲକ୍ଷ୍ୟ ମୁଁ ମାଗେଁ<br>
ମାଗେଁ ପ୍ରଭୁ !<br>
ମନ ଭେଦୀ ଶର ।

[ ମାଳଚନ୍ଦ୍ରର ଉପତ୍ୟକା ]

**ସଂସ୍କୃତ** ସଞ୍ଚୟନଟି ପ୍ରକାଶ ପାଇଁ ବାରମ୍ବାର ସ୍ମରଣ କରାଇ ଦେଇଛନ୍ତି 'ପର୍ବତାରୋହଣ'ର ସଫଳ ଔପନ୍ୟାସିକ ପ୍ରଫେସର ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର । ତାଙ୍କ ପ୍ରତି ମୁଁ କୃତଜ୍ଞତା ପତ୍ର ସ୍ୱାକ୍ଷରିତ କଲି । ନୂତନ ଗୀତି ଉଚ୍ଛଳ କବିତାର ସ୍ରଷ୍ଟା ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ଶତପଥୀଙ୍କର ସତର୍କତା ମୋତେ ଏହାର ପ୍ରଣୟନରେ ପ୍ରେରଣା ଦେଇଛି । "ଲବ୍ଧ ମନୋରଥ ଅର୍ଥୀ ରାଜଦ୍ୱାରେ ଯଥା/ ଦ୍ୱାରପାଳେ ଦେଇଯାଏ ମୁଦ୍ରା ଦୁଇ ଚାରି ।" ପରି ତାଙ୍କୁ ଧନ୍ୟବାଦ ଦେଇ ଯାଉଛି ।



ବିନୋଦ ଚନ୍ଦ୍ର ନାୟକ

ପ୍ଳି ୪୫ (ଏଫ୍)
ଇଉନିଟ୍ ୮, ଭୁବନେଶ୍ୱର
୭ । ୫ । ୧୯୯୦

# ଜ୍ୟୋତ୍ସ୍ନାରେ

ଏ ଜ୍ୟୋତ୍ସ୍ନାରେ
ଦୀର୍ଘତୃଣ ମାଳ ଅଳଙ୍କାର
ପ୍ରାକ୍ତନ ପୃଥ୍ୱୀର,
ନଦୀ ଜଡ଼ ଜନପଦ
ନିର୍ଜନ ଶସ୍ୟରେ
ଝରିପଡ଼େ ଭାଦ୍ରର ଶିଶିର ।
ସେଇ ତଟେ ଆମ୍ରବନ ପ୍ରେତ ଭୂମି ତଳେ
ଭୌତିକ ଆଲୋକ
କର୍ପୂରର ଦୀପ ପରି ନଭେ ଆଉ ଜ୍ୱଳେ ।
କାଉଁଶ ହାଡ଼ର ଯେତେ
ଅଭ୍ରକର ସ୍ତର
ଚନ୍ଦ୍ରବୋଡ଼ା ଗତ
ଇଚ୍ଛାମତ
ଏଇ ତଟେ ଏକକ କବର
ଅଭିଲେଖ ହୀନ ପ୍ରସ୍ତରର
ଏକ ମଣିଷର ।
ଆକାଶେ ମିଥୁନ ଲଗ୍ନ
ଛାୟା ପଥେ
ପ୍ରଥମ ସାକ୍ଷାତ ପରି ଚନ୍ଦ୍ରର
ତାରା ସାଥେ
କମଳା ଜ୍ୟୋତ୍ସ୍ନାରେ
ଚନ୍ଦ୍ରାସ୍ନିଗ୍ଧ ରାତେ ।

ଜଳ ସ୍ରୋତ
ତରଳ କ କାଚ
ଉତ୍ତରା ଫାଲ୍‌ଗୁନୀ ଲଗ୍ନ
କ୍ଷେତର ମଗ୍ନତା ଗୁଡ଼
ଉତରଇ ମାଛ
ଜନ୍ମ ଜଳ ଗମ୍ଭୀରତା ଖୋଜେ
ହୁଏତ ସାଗର
ଅବା ଦୂର ଦ୍ୱୀପେ
ନକ୍ଷତ୍ରର ପରିଧିରେ ଯଷ୍ଟି ମଧୁ—
ବନର ସମୀପେ !
କୁସୁମ ଶାଖାରେ
ଦେଇ ଭର
ନିର୍ଜନ ମୁଁ ଛିଡ଼ା ।
ହରିତ୍ ସାପର ସାଥେ
ହରିଦ୍ରା ସାପର
ଜ୍ୟୋସ୍ନା ତଳେ
ଦେଖୁଥିଲି ନିବିଡ଼ତା—
କ୍ରୀଡ଼ା ।
ବୋଧ ହେଲା
କବର ଉପରେ
ଠିଆ ହୋଇ ଜଣେ
ମୁଁ ତାହାରେ ଜାଣେ
ସେ ନୁହେଁ ମନୁଷ୍ୟ
ଜୀବନ ପ୍ରଲୁବ୍‌ଧ
ସିଏ ଏକ
ଭୌତିକ ପୁରୁଷ ।
ମୃତ୍ତିକାସ୍ତର ଅନ୍ଧାରେ
ଯେ ଜୀବନ ହୁଅଇ ନିର୍ମାଣ

ତାର ପାଇଁ ଆସେ ସିଏ ଜ୍ୟୋତ୍ସ୍ନାରେ
ଉଚ୍ଚାର ଉଚ୍ଚାର
ଆଲୋକର ବତାସର ମୃତ୍ତିକାର
ଜୟ ଜୟ ଗାନ ।
ପୋକ ସମ ଚେଣ୍ଡୁ
କବରର ଅନ୍ଧକୂପ ଭେଦ କରି
ଏ ଶାରଦ ସ୍ୱଚ୍ଛ ନିଶିଥରେ
ସେ ଆସିଛୁ
ଦେହେ ବୋଲି
ମୃତ୍ୟୁଲୋକ ରେଣୁ ।
ସଞ୍ଜବେଳେ
ଗ୍ରାମ ଆଖଡ଼ାରେ
ମନ୍ଦିରା ତାଳେ ସେ
ବଜାଏ ମର୍ଦ୍ଦଳ
କାନ ତଳେ ଭୁଳା କାଠି
କନୌଜର କେଓଡ଼ା ଅତର,
ସଙ୍ଗୀତ ଛେନା ଗୁଡ଼ରେ
ଢାଏ ମିଷ୍ଟ ସ୍ୱର
ଦକ୍ଷିଣୀ ନାଟର ଛନ୍ଦେ
ବଜାଏ ସେ ଗୋଡ଼ର ଘୁଂଘୁର ।
ମଧ୍ୟାହ୍ନରେ ଭୁଠର ପାହାଚେ
ଶାଢ଼ୀ ଶାୟା ଅନ୍ତର୍ବାସ ଧୋତି ଓ ଅଙ୍ଗୁଛି
ସବଙ୍ଗାରେ କାଚେ ।
ତାହାର ଗଢ଼ଣ
ଠିକ୍ ଯେମିତି
ଲର୍ଡ଼ ବାଇରନ୍ !
ପ୍ରେମ କରି
କେଉଁଠାରୁ ଆଣିଥିଲା
ସୁନ୍ଦରୀ ସିହାଣୀ

ଫେସନରେ ଏକ ସାହେବାଣୀ
କଥାର ଲହରରେ
ଭ୍ରୂ ବିଳାସୀ ନାଚ
ସବୁଥିରେ
କଳକଣ୍ଠ ତାଙ୍କ ।
ନୂତନ ଜୀବନ ଖୋଜି
ଦୁହେଁ ଯବେ
ଗଲେ କାଳମାଟି
ଏକାକୀ ସେ ଫେରିଥିଲି
ହଜାଇ ତା
ସୋହାଗର ଗନ୍ଧ ।
ତାର ପରେ କାଠ ଷ୍ଟେସର ପକଡ଼ିବାପାଇଁ
ସାବଧାନ ଥାଏ ଡ୍ରାଇଭର ବଣେ
କେବେ କେବେ ଭେଟ ହୁଏ
ପଲାଶ ସ୍ନିଗ୍ଧ ପଥରେ
ପ୍ରସ୍ତର ଚଟାଣେ
ହାତେ ଯାଏ ଟୋକି
କଡ଼ା ସ୍ୱାଦ
ଗାଡ଼ ବାଇଗଣୀ କଣ୍ଠା କୋଳ !
ବେପରୁଆ ବଂଶ ଯଷ୍ଟି ପରି
ଚଳନ ତାହାର,
ପଡ଼େ ଝର ଝର
ଝଙ୍କାରଇ ତାର,
ସାରଙ୍ଗୀର ଆଳାପ କି
ତାହାର କଥାର
ଶୋ ଲେଗାର୍ଡ଼ ଇନ୍ ଲଭ୍
ଶୋ ଡ୍ରାଉନ୍ଲେସ୍ ଇନ୍ ୱାର୍
ଯେହେତୁ ଏକ
ୟଙ୍ଗ ଲଭର୍ ଘର ।

ଇସ୍କୁଲ ବାଟରେ ଥରେ
ଭେଟିଲି ତାହାକୁ
ଗୋଟାଏ ହାତରେ ତାର ଲୁହା ଚେନ୍
ଅନ୍ୟ ହାତେ
ଯୋଡ଼ା ଲମ୍ବା ଠେଙ୍ଗା ।
ପାଇଲି ମୁଁ ପତ୍ତା :
ସଉକରେ ପାଳିଥିଲି
କେଉଁଠାରୁ ପାଇ ଏକ କୁତ୍ତା,
ନାମ ଦେଇଥିଲି
ଗୁଲ୍‌ବଦନ୍
କଳା ଧଳା ମିଶା ରଙ୍ଗ
କପାଳରେ ଟୀକା
ସରୁ ଜହ୍ନ ।
ଫାଙ୍କିଲ୍ ଚମ୍ପକ ବଲ୍ଲଭୀ
ଭୁଚ୍ଛା ଭୁଚ୍ଛା
ଇଟା ଖଣ୍ଡେ ଧରି
ଫୋପାଡ଼ି ଦେଲି ତା ଆଡ଼େ,
ଗୁଲ୍‌ବଦନ୍
ଆସିଲା ଦଉଡ଼ି;
ପଳାଇ ନପାରି
ଜୋର୍ ପାଟି ଛାଡ଼ି,
ବଦମାସ୍, ଦୁମ୍‌କରି
ପଡ଼ିଲା କାଣ୍ଡରି ।
ବାସ୍ !
ଏତକରେ ଖାସ୍
ପିତ୍ତ ତାର ମୁଣ୍ଡେ
ଉଠିଗଲା

ଧର୍ଷା ତଳେ କଦମ୍ବ
ଗଛଟିର ମୂଳେ
କୁଞ୍ଜଟିର
କାଟିଦେଲା ଗଳା ।
ହଠାତ୍ ମୁଁ ଉଠିଲି କାନ୍ଦି
ସେ ବି କାନ୍ଦ ଗଡ଼ିଗଲା ତଳେ
ମୃତ ଆତ୍ମାର ତର୍ପଣ
ଦି'ଜଣ ଯାକ
କଲୁଁ ଅଶ୍ରୁଜଳେ !
ହଠାତ୍ ଶୁଣିଲି ଦିନେ ଗୋଧୂଳି ବେଳାରେ
ବଙ୍କା ଡୁଂଗ୍ରୀର ସେ ଶାଳ ବଣେ
ଫାଲ୍‌ଗୁନର ମଧ୍ୟାହ୍ନରେ କୁର୍‌ହାଡ଼ରେ
ତଣ୍ଟି ତାର
କାଟି ଦେଇଅଛି କେହି ଜଣେ !
ଶ୍ରେଷ୍ଠ ଗ୍ରାମ ଶ୍ରେଷ୍ଠ ନଦୀ
ଶ୍ରେଷ୍ଠ ଶ୍ରେଷ୍ଠ ମଣିଷର ପ୍ରାଣ
ନାଟକର ପାଇଁ ନୁହେଁ
କାହାଣୀ ବି ନୁହେଁ
ଦୂରେ ଥାଉ ଧାରଣା ବା ଧ୍ୟାନ ।
ତଥାପିତ ଗୋପିନାଥ ମହାନ୍ତି ଭଣିତ
ଉପନ୍ୟାସ ନାୟକର ପର
ସେ ଥିଲା ବିଚସ
ତାର ହତ୍ୟା ନେଇ ଯେତେ
କ୍ରୋଧ କାତରତା
ବୃଥା ବିତର୍କିତ ।
ଇଚ୍ଛା ହେଉଥିଲା ଫେର୍
ଅନ୍ଧକାର ଭେଦି
ସେ ଉଠନ୍ତା ଯଦି

ଅଶ୍ରୁର ଆଳତି ଦେଇ
ଏ ସମାଧି ପାଲଟାନ୍ତି
ତାର ପୂଜା ବେଦୀ
ସଁପି ଦେଇ
ଏଇ କାଶ, ଏ ଆକାଶ,
ଏ କଇଁର ହାସ
ଏ ନୀଳ ନିର୍ଜନ ବାସ
ସାରା ଘାସ ।

—※—

# ରାଜହଂସର ରାତ୍ରି

ମନେ ଅଛି ?

ସେ ଦିନର ମୃଗଶିର ତଥି
ଅର୍ଦ୍ଧରାତ୍ରି ଯାଇନାହିଁ ବିତି

ଅଷ୍ଟମୀ ଚନ୍ଦ୍ରମା

ଝିଲ୍ଲୀର ଝର୍ଝର
ହୋଇନାହିଁ ସ୍ତବ୍ଧ

ଉଡ୍ଡୀନ ଡେଣାରେ ଆମ

ଚିଷ୍ଟନ୍ ଉଲ୍ଲାସ
ଏଞ୍ଜିନ୍‌ର ଶବ୍ଦ !

ନିମ୍ନେ

କ୍ଷିପ୍ର ବସୁଧାର ନଗ୍ନ
ବିପ୍ର ଉପବୀତ ସମ
ପ୍ରସ୍ତରର ବିତାନେ ଅବଧି

ଶୁଭ୍ର

ଯେହ୍ଲେ ଏକ ବିବସ୍ତ୍ର ତନିମା
ହଜି ଯାଏ କ୍ଷିତିଜର ସୀମା ।

ଜନପଦ ଗୃହ ବଧୂ ରନ୍ଧନର

ମାଳ ଧୂମ ମ୍ଳାନ
ବ୍ୟଞ୍ଜନର ଘ୍ରାଣ

ସୂର୍ଯ୍ୟ ସମ ଲାଗୁଛି ଏକ ଢର

ପରସ୍ପର

ଅକାଶର ମଳେ ସନ୍ତରଣ
ଓହ୍ ଅବଗାହ
ପଦ୍ମବନ
ସବୁଜ ନିବିଡ଼
ସ୍ୱପ୍ନ ସ୍ୱପ୍ନ ସ୍ନିଗ୍ଧ ଆମ ନୀଡ଼ !!
ନୀଡ଼—ତୁମ ଚଞ୍ଚୁ ପୁଟେ କୁଶ ଖଣ୍ଡେ
ଥିଲ ଯାହାରଚି
ଅଛି ? ମନେ ଅଛି ?
ମନେ ଅଛି ନାଳ ଭୁଞ୍ଜିବାର
ଦଣ୍ଡ ମୃଣାଳର
ଓଠେ ଓଠେ ଚଖା ଚଖି
ସଙ୍ଗ ସଚ
ମଖା ମଖି
କୁଙ୍କୁମର ପରାଗ କେଶର ?
ସେ ସବୁ ବି ଇତି
ମୋ ରାତି ବି ଯାଇଛି ତ ବିତି
ଆଜି ମୁଁ ଯେ ଗୃହସ୍ଥ ପ୍ରାଙ୍ଗଣେ
ବନ୍ଦୀ, ଦୃଢ଼ ଜଞ୍ଜିରର
ଜଟିଳ ବନ୍ଧନେ
ହାଣ୍ଡି ପଦ ଦୋ'ଟି !
ମାର୍ଗଶୀର ବୃହସ୍ପତି ବାର
ଲକ୍ଷ୍ମୀପୂଜା ମାଣବସା ଝୋଟି
ନକଟେ ଅଙ୍କିତ
ଏ ଜ୍ୟୋତ୍ସ୍ନାରେ, ଶୁଦ୍ଧାରେ, ଶିଶିରେ
କେତେ ଅହା ଶୁଭ୍ର ଓ ବଚଳ !
ଯାହାର ପାଟରେ ଛିଡ଼ା
ଶ୍ରାଦ୍ଧା ଗୁଣ୍ଡାକୁଣୀ

ଗୁହାଳେ ଗୋଧନ, କୋଳରେ ଦୁଲାଳ
ଭଣ୍ଡାରରେ ଧାନର ଗଉଣୀ
ବାହେ ସୁବର୍ଣ୍ଣ ବାହୁଟୀ
ହାତରେ କଙ୍କଣ
ହେଇଛି ପୂଜା କଳସ
ପାଦ ଆଳମ୍ପନ ।
ବନ୍ଦୀ ମୁଁ ଯେ ବନ୍ଦୀ ଏଥେ
ପିଞ୍ଜର କବାଟ
ଫିଟାଇବା ନାହିଁ ପାଏ ବାଟ ।
ତୁମେ କାହିଁ-କାହିଁ ?
କ୍ଷୁତ୍ ପିଆସ ଦୂରେ ଥାଉ
ଆଉ କିଛୁ ମନେ ପଡୁ ନାହିଁ ।
ତୁମେ କ ମୁହାଣ ତଟେ
ବସୁଧାର ପାଣ୍ଟି ଭେଟାଇବ
ପୁରାତନ ଦେଉଳରେ ଏକକା ତ୍ରିଶୂଳ
କାହିଁ ନାହିଁ ଶିବ
ତୁମର ବିଳାପ ରବ
ରାଗିଣୀର ପର
ଆସି ବାଜେ କାନେ
ଲୋଥର ପ୍ରବାହ ତୁମ ଦେହ ବନ୍ଧ
ଅଣିହଏ ଘ୍ରାଣେ
ଚୁଲ୍ଲୀ ଅଗ୍ନି ଖର—ଖରତର
ଅଦା, ରସୁଣ, ଲଙ୍କାର ମିଶ୍ରିତ ବାସନା
ଲୋମଶ ହାତର ସ୍ପର୍ଶ—ଦୃଢ଼ ମୁଷ୍ଟି
ଗ୍ରୀବାମୂଳେ ଛୁରର ଯନ୍ତଣା
ରୁଦ୍ଧଶ୍ୱାସ ମାତ୍ର ଚକ୍ଷୁ
ଦେଖୁଛୁ ନରଖି
ଚକ୍ ଚକ୍ ଧାର ଏକ
ଇସ୍ପାତ ପନଖି ।



# ଆଉ ବାରେ ଫେରଆସ

ସୀମାନ୍ତର
ଏକ୍ସପ୍ରେସ୍ ଘ୍ଲଡ଼
ପ୍ଲାଟ୍ଫର୍ମେ ଦେଖିଲ
ଫାଟକରେ ପ୍ରାର୍କ୍ ତୁମ ଗାଡ଼ି .
ସମସ୍ତ ଶଙ୍ଖୋଳା
ନେଇ ପହଞ୍ଚିଲ ଯହିଁ
ଛବିଟିଏ ପରି
ତୁମର ବଙ୍ଗଳା,
ଅତିଥି ଭବନେ ବସି
ଚାହା ପରେ
ଜାଣିଲ ଏକ୍ଷଣ ତୁମେ
ରହିଛ ଏସ୍ଥାରେ
ଦୂର ଦର୍ଶନରେ
ଜନ ସମ୍ପଦ ଅରଣ୍ୟ ସଂରକ୍ଷଣ
ପରିକଳ୍ପନାର
ଇସ୍ତାହାର
କଥାରେ ତୁମର
ଦାବ ଦାହେ
ଛିଦ୍ରୁକ ଜ୍ୱଳ ଯେପରି
ଛୁଟିକେ ଝିରି ଝିରି ।
ଲାଉଞ୍ଜ୍ର ବୈଠକୀ ପରିବେଶରେ
ଉତ୍କଣ୍ଠିତ ମୁହୂର୍ତ୍ତର ପରେ

ରଞ୍ଜନୀ ଉପଗ୍ରହିକା
ଦନ୍ତରୁ ହାସ୍ୟରେ
ଜାଣିଗଲ ତୁମେ ଫେର୍
ବିମାନ ବନ୍ଦରେ ।
ଅଟଗ୍ରହ୍ଣ ଭୋଜ
ପରେ ଆଉ ମିଳିଲାନି ଖୋଜ ।
ସାନ୍ଧ୍ୟ କବିତା ଉତ୍ସବେ
ମିତ କଥନରେ
ଶୈଳୀର ନେପଥ୍ୟ ଫେର
ଉତ୍ତୀର୍ଣ୍ଣ ପ୍ରହରେ
ନୈଶ ଭୋଜେ ଗୁଳଚାନେ
ନଗରୀ ଜୀବନ ଯୁକ୍ତ
ବର୍ଣ୍ଣ ବ୍ୟବହାରେ
ଘାର୍ଘ କର୍ମ ସୂତ୍ର
ରୂପ ବନ୍ଧନୀର ନାନା ରୁଚ ।
କ୍ଲାନ୍ତ ମନ ଶ୍ରାନ୍ତ ଅବୟବ
ସନ୍ନିକଟେ ତୁମେ ନାହଁ
ଅଥଚ ସର୍ବତ୍ର
ଚତୁର୍ଦ୍ଦିଗେ ତୁମ କଳରବ ।

ଅଥଚ ଦୂରି ପ୍ରଜନ୍ମ
ସେ ଅଭଥି ଶାଳା
ଶିଳ୍ପନଗରୀ ନସ୍ରାଟ
ରକ୍ତ ଗିରିମାଳା
ଚାଙ୍ଗଣାର ଧୂମେ ମେରୁନ୍
ସଜିର ଆକାଶ
ଚନ୍ଦ୍ର ଏକ ମ୍ଳାନ ପରିହାସ
ପାର୍ଶ୍ୱେ ଜଳତରଙ୍ଗ ଶବ୍ଦ ସୃଜେ
ବର୍ଣ୍ଣ କାଚ ଶ୍ରେଣୀ

ଦୃଷ୍ଟି ବହିର୍ଭୂତ ତଳେ,
ମନ୍ଦ ଶାନ୍ତ ନୀଳ ଭୂଙ୍ଗୀର ସମ
ବନୋଦ୍ଗମ ବେଣୀ ।
ଶିଥିଳ ମଗ୍ନତା ନେଇ
ଛନ୍ଦର କଗତେ
କବିତା କବିତା ମନେପଡ଼େ ?
ସଚେତନ ପରିଚର୍ଯ୍ୟା
ଦୀର୍ଘ ଅବକାଶ
ସବୁଠାରେ ତୁମ ସ୍ପର୍ଶ
ସବୁଆଡ଼େ ତୁମ ଅନ୍ତର୍ବାସ
ଅଥଚ ଅନ୍ତର୍ଧ୍ୟାନର
ଏକ ବ୍ୟାକୁଳତା
ଅସହ୍ୟ ସୁଖର ସମ
ଢାଏ କେତେ ବ୍ୟାଥା !
ସମସ୍ତ କାମନା କରି ଶେଷ
ମୁଁ ଫେରିଲି—
ପଥ ପାର୍ଶ୍ୱ ହର୍ମ୍ୟ ହର୍ମ୍ୟ
ଦୂରଦର୍ଶନରୁ ତୁମ କଣ୍ଠ ସ୍ୱର
ଭାସିଆସେ ଋଦ୍ଧ ଗୀତିକା
—ଆବାର ଫିରେ ଏସୋ ।



# ଅଶନି ସଙ୍କେତ

[ What The Thunder said—T.S. Eliot ]

ସ୍ୱେଦାକ୍ତ ମୁଖ ସମସ୍ତ ଝଡ଼ତୁଡ଼ ଆଲୁଅରେ
ରକ୍ତାଭ ହୋଇପରେ
ଉଦ୍ୟାନମାନଙ୍କର ତୁଷାର-ଶୈତ୍ୟ ନୀରବତା ପରେ
ଶିଳାସ୍ଥାନ ସବୁର ନିଦାରୁଣ ଯନ୍ତ୍ରଣା ପରେ
ସୁଦୂର ପାହାଡ଼ ଉପରେ
ବନ୍ଦୀଶାଳ ଓ ରାଜମହଲର ଚିତ୍କାର ଓ କ୍ରନ୍ଦନ
ଏବଂ ବସନ୍ତର ଚଢ଼କ ପ୍ରତି ଶବ୍ଦାୟମାନ
ଯିଏ ବନେ ବଞ୍ଚିରହିଥିଲେ
ସେମାନେ ଆଜ ମୃତ
ଆମେ ସବୁ ଯେଉଁମାନେ ବଞ୍ଚିଅଛୁଁ
ସାମାନ୍ୟ ଧୈର୍ଯ୍ୟତାସହ
ମୃତ୍ୟୁକୁ ଅପେକ୍ଷା କରୁଛୁଁ !

ଏଇଠାରେ ଜଳ ନାହିଁ କିନ୍ତୁ ଖାଲି ଶିଳା
ଶିଳା ଏବଂ ଜଳର ଶୂନ୍ୟତା
ଏବଂ ବାଲୁକାର ପଥ
ପଥ ଚଳେ ଅଙ୍କା ବଙ୍କା ପାହାଡ଼ ଶିଖରେ
ଯେ ପାହାଡ଼ ସବୁ ଖାଲି ଜଳଶୂନ୍ୟ ଶିଳା
ଜଳଥିଲେ ନିଶ୍ଚେ ଅଟକି ଥାଆନ୍ତୁ-ଜଳ ପାନ ପାଇଁ
ଶିଳା ମଧ୍ୟେ କେହି କେବେ ଅଟକେ କି-ଅବା ଜଳ ପାଇଁ
ଶିଳା ମଧ୍ୟେ କେହି କେବେ ଅଟକି ପାରେ ନା-ଭାବି ବି
ପାରେନା

ସ୍ୱେଦ ଶୁଷ୍କ ହୁଏ—ବାଲୁକାରେ ମଧ୍ୟ ଦୁଇପାଦ
ଯଦ୍ୱ ଶିଳା ମଧ୍ୟେ ଖାଲି ଥାନ୍ତା ଜଳ
ମୃତ ପାହାଡ଼ର ମୁହଁ ଅଦ୍ଭୁତ ସମସ୍ତ ଦାନ୍ତ
ଛେପ ଫିଙ୍ଗିବାର ଶକ୍ତି ନାହିଁ
ଏ ସ୍ଥାନରେ ଜଣକର ମଧ୍ୟ ବସିବାର
ଛିଡ଼ା ହେବାର ବା ପଡ଼ରହିବାର
ଉପାୟ ହିଁ ନାହିଁ
ପାହାଡ଼ରେ ନୀରବତା ମଧ୍ୟ ନାହିଁ
କେବଳ ବର୍ଷାବିହୀନ ଶୁଷ୍କ ବଜ୍ରାଘାତ ।
ପାହାଡ଼ରେ ନିର୍ଜନତା ନାହିଁ
ଖାଲି ରକ୍ତିମ ସ୍ଫୀତ ମୁଖର ଅବଜ୍ଞା ବିଦ୍ରୂପ ଓ କର୍କଶ ଗର୍ଜନ
ଫଟା ମାଟି ଗୃହର ଦ୍ୱାରରୁ

ଯଦ୍ୱ ଜଳଥାନ୍ତା

କିନ୍ତୁ ଶିଳା ବି ନଥାନ୍ତା
ଯଦ୍ୱ ଶିଳା ଥାନ୍ତା
ଜଳ ବି ଥାଆନ୍ତା
ଏବଂ ଜଳ
ଏକ ନିର୍ଝର
ଶିଳା ମଧ୍ୟରେ ଗ୍ରୋଟ ଏକ ପୁଷ୍କରଣୀ
ଯଦ୍ୱ କେବଳ ଜଳର କଳ କଳ ଶବ୍ଦ ଥାନ୍ତା
ଏବଂ ଘାସର ସାଇଁ ସାଇଁ ଶବ୍ଦ
କିନ୍ତୁ ଶିଳାର ଉପରେ ଜଳର ଶବ୍ଦ ଥାଆନ୍ତା
ଯେଉଁଠି ତପସ୍ୱୀ ବୁଲ୍ ବୁଲ୍ ଦେବଦାରୁ ବୃକ୍ଷନିଚୟରୁ
ଗାଆନ୍ତା
ଥିପ୍ ଥିପ୍ ଥିପ୍, ଥପ୍ ଥପ୍ ଥପ୍ ଥପ୍
କିନ୍ତୁ ସେଇଠାରେ ଜଳ ନାହିଁ ।
ତୃତୀୟ ଜଣକ କଏ ତୁମ ସାଥେ ସର୍ବଦା ଯେ ଥିଲେ
ଗଣନ୍ତି କଲି ସମସ୍ତେ, ତୁମ ସାଥେ ମୁଁ ହିଁ କେବଳ

କିନ୍ତୁ ଏ ଶୁଭ୍ର ପଥର ଅଗ୍ରେ ଯେବେ ଅନାଏଁ ହୁଏତ
ଆଉ ଜଣେ କିଏ ତୁମ ସାଥିରେ ଚାଲନ୍ତି
ବାଦାମି ଓଢ଼ଣୀ ଦ୍ୱାରା ଆଚ୍ଛାଦିତ ହୋଇ-ଧୀରେ ଧୀରେ
ସଂଚରଣ କରି

ଶିରେ ଆବରଣ
ମୋର ଜଣା ନାହିଁ ସେ ପୁରୁଷ ବା ନାରୀ
ସେ କିଏ, କିନ୍ତୁ ସେ ତୁମରି ପାଖରେ ।
ବାୟୁରେ କି ଶବ୍ଦ
ମାତାର ବିଳାପ ପରି ଗୁଞ୍ଜରିତ
ସୀମାହୀନ ସମତଳ ଭୂମିଏରେ ମସ୍ତକରେ ଆବରଣ ଦେଇ
ଦଳ ଦଳ କିଏ ସବୁ—ସମତଳ ଚକ୍ରବାଳ ଦ୍ୱାରା ବଳୟିତ
ଫଟା ଭୂମି ପରେ ଝୁଣ୍ଟି ପଡ଼ଯାନ୍ତି
ପାହାଡ଼ ଶ୍ରେଣୀ ଉପରେ ସେ ଟା କି ନଗରୀ
ଧଦରା, ମରମର ବାଇଗଣୀ ବତାସରେ
ବିସ୍ଫୋରିତ ହୁଏ
ପତନ ଉନ୍ମୁଖ ଗମ୍ବୁଜ
ଜେରୁସେଲମ୍, ଏଥେନ୍ସ୍, ଆଲେକ୍‌ଜାଣ୍ଡ୍ରିଆ
ଭିଏନା—ଲଣ୍ଡନ
ଅବାସ୍ତବ
ଏକ ରମଣୀ ତାହାର ଲମ୍ବ କଳା କେଶ ଟାଣି ଥିଲା
ଏବଂ ସେ ସୂତାରେ ଉଠାଇଥିଲା ଫିସ୍ ଫିସ୍ ବେହେଲା ସଙ୍ଗୀତ
ଏବଂ ଶିଶୁର ପରି ମୁହଁ, ବାଦୁଡ଼ିର ଦଳ ବାଇଗଣୀ ଆଲୁଅରେ
ଦେଇଥିଲେ ସିଟି ଏବଂ ପିଟିଥିଲେ ଡେଣା
ଏବଂ କଳା କାନ୍ଥ ତଳେ ମୁଣ୍ଡ ତଳ କରି
ହାମୁଡ଼େଇ ଚଢ଼ିଲେ
ଏବଂ ଶୂନ୍ୟରେ ଓଲଟା ଗମ୍ବୁଜ ସବୁ ବଜାଇଲେ
ସମୟ ନିର୍ଦ୍ଧାରଣ ଘଣ୍ଟା ବାରମ୍ବାର
ଏବଂ ଶୂନ୍ୟ କୁଣ୍ଡ ଏବଂ ଶୁଷ୍କ କୂପମାନଙ୍କୁ

ସ୍ୱର ସମସ୍ତର ସଙ୍ଗୀତ ଉଠିଲା
ପାହାଡ଼ମାନଙ୍କ ମଧ୍ୟବର୍ତ୍ତୀ ବିଧ୍ୱସ୍ତ ବିବରରୁ
ଅସ୍ୱଚ୍ଛ ଜ୍ୟୋତ୍ସ୍ନାରେ
ଭଙ୍ଗା ସମାଧି ଉପରେ ପ୍ରାର୍ଥନା ମନ୍ଦିର ପାଖେ
ଗାନ ଗାଏ ତୃଣ
ଶୂନ୍ୟ ପ୍ରାର୍ଥନା ମନ୍ଦିର—କେବଳ ସେ ବତାସର ଗୃହ
ଝରକା ନାହିଁ କବାଟ ଦୋହଲେ
ଶୁଷ୍କ ଅସ୍ଥିମାନଙ୍କ ନିକଟ ଆଉ ବିପଦର ଆଶଙ୍କାତ ନାହିଁ
ସୁନ୍ଦର ବୃକ୍ଷ ଉପରେ କୁକ୍‌କୁଟ ଗୋଟାଏ
କୋ କୋ ରକୋ କୋ କୋ ରକୋ
ବିଦ୍ୟୁତ ଝଲକ ତାର ପରେ ଭିଜା ଦମକା ହାଓ୍ୱା
ବର୍ଷା ଆଣେ

ଶିଥିଳ

ଶୀର୍ଣ୍ଣ ଗଙ୍ଗା ଏବଂ ପତ୍ର
ଅପେକ୍ଷା କରନ୍ତି ବର୍ଷା କୃଷ୍ଣ ମେଘ ସବୁ
ଜମି ଆଣେ ବହୁଦୂରେ ହିମବନ୍ତ ପରେ
ନମ୍ର ବନ, ନୀରବ ଓ କୁବ୍‌ଜ
ତାପରେ ଅଶନି ଇଙ୍ଗିତ
ଦା
ଦାନକର—ଦଉ। କଣ ଆମେ ଦାନ କଲୁଁ ?
ବନ୍ଧୁ, ମୋ ବୁକୁରେ ରକ୍ତ ଉଦ୍‌ବେଳିତ ହୁଏ
ଭୟାନକ ଦୁଃସାହସୀ, ମୁହୂର୍ତ୍ତର ଏ ଆତ୍ମସମର୍ପଣ
ଏକ ଯୁଗ ପରିଣାମଦର୍ଶିତା ଯା ଅନୁସରଣ କରିବ
ପାରେନା
ଏତଦ୍ୱାରା କେବଳ ଏତଦ୍ୱାରା ଆମେ ହିଁ ବଞ୍ଚିଛୁ
ଯା ଆମର ମୃତ୍ୟୁଲେଖ ମଧ୍ୟରେ ମିଳେନା
କମ୍ୱା ହିତାକାଂକ୍ଷୀ ଉର୍ଣ୍ଣନାଭ ଜାଲ ସଂରକ୍ଷିତ
ସ୍ମୃତି ଫଳକରେ

କମ୍ପା କୃଶ ବ୍ୟବହାରଜୀବୀର ଭଙ୍ଗା ମୋହରରେ
ଆମ ଶୂନ୍ୟ କୋଠରୀ ମଧ୍ୟରେ
ଦା
ଦମ୍ଧ୍ୟମ୍
ମୁଁ କାହିଁତ ବିଷୟ ଶୁଣିଛି
ମାସ ଥରେ କବାଟର ଉନ୍ମେ, ତା ଘୂରିଅ ଥରେ ମାତ୍ର
ଆମେ ବନ୍ଧି ବିଷୟ ଚିନ୍ତିତ ନିଜ ନିଜ ବନ୍ଦୀଘରେ
ପ୍ରତ୍ୟେକ ନିଧାର୍ଯ୍ୟ
ବନ୍ଧି ନେଇ ଚିନ୍ତାକ୍ଲିଷ୍ଟ କରନ୍ତ ବନ୍ଦୀ ଘର
କେବଳ ରାତ୍ରୀ ସମୟେ ଉଡ଼ନ୍ତା ଗୁଜବ
ମୁହୂର୍ତ୍ତରେ ଜିଆଇଁ ଦିଏ ଭଗ୍ନ
କୋରିଓଲାସ୍
ଦ
ଦମ୍ୟନ୍ତ—ନଉକାଟି ସହଜରେ ମଣ ଦେଲା
କାତ ଓ ଆହୁଲା ନେଇ କୁଶଳୀ ହାତରେ
ସମୁଦ୍ର ବି ଶାନ୍ତ ଥିଲା ତୁମର ହୃଦୟ ମଧ
ଆନନ୍ଦରେ ସଙ୍ଗତ ଦିଅନ୍ତୁ
ଯଦି ଆହୂତ ହୁଅନ୍ତା ବିଶ୍ୱସ୍ତ ଭାବରେ
ସେଇ ନିୟନ୍ତ୍ରଣ କରୁଥିବା ହାତର ସନ୍ଧିତ
ମୁଁ ବସିରହିଛି ବେଳାଭୂମିର ଉପରେ
ମତ୍ସ୍ୟର ଶିକାର ପାଇଁ, ଅପନ୍ତିରା ଭୂମି
ପଶ୍ଚାତରେ ମୋର
ମୁଁ କି ଠିକ ବନ୍ଦୋବସ୍ତ କରିପାରେ ମୋ ସବୁତକ ଜମି
ଲଣ୍ଡନର ସେତୁ ଭାଙ୍ଗି ପଡେ, ଭାଙ୍ଗି ପଡେ, ଭାଙ୍ଗି ପଡେ

ଧ୍ୱଂସ ତୁମେ ଗ୍ରାସକର, ଗ୍ରାସକର

ଆକ୍ୟୁଟେନ୍‌ର ରାଜପୁତ ବସିଅଛୁ ତ୍ୟକ୍ତ ପ୍ରାସାଦରେ

ହେ ଟିଟିଭ? ହେ ଟିଟିଭ

ଏସବୁ ଭଗ୍ନାଂଶ ମୁହିଁ ମୋ ଭଗ୍ନ ସ୍ତୂପରେ

ଆଉଜାଇ ଦିଏ

ରଖିଥିବା ଉତ୍ସର୍ଗସବୁ ନକ ତୁମକୁ ଫାବୁଛି

ହ୍ୱେରେନମୋ ଫେର୍‌ତ ପାଗଳ

ଦତ୍ତ ଦୟଧ୍ୱମ୍ ଦମ୍ୟତ

ଶାନ୍ତିଃ ଶାନ୍ତିଃ ଶାନ୍ତିଃ



# ପୟାର୍

[ସୁନ୍ଦରଗଡ଼ର ଆଗ୍ରିୟା ଭାଷା ପ୍ରସ୍ତୁତ]

ସଜନୀ ! କୈସନ ଯାଇହୁଁ ଘର୍
ଇ ଭରା ବାଦର ମାହ ଭାଦର
ବରଷନ୍ଥ ପାନ ଅଝର୍ ।
ବଜନୀ ମାର୍ ଥେ ଛୁରୀ ଗରଜଥେ ବଜର
ଆକାଶ ମେ ଘନଘଟା ଘୋର୍
ପିଆସୀ ଗୃତକ ଆଁଖି ମନ ତ ନାଚ୍‌ଥେ ସଖୀ
ଯୈସନ ମନ ମଓର୍ ।
ସଜନୀ ! କୈସନ ଯାଇ ହୁଁ ଘର ।
ପିଚ୍ଛଲିତ ବନପଥ ସଜଳିତ ବେଶବାସ
ମୁକୁଳିତ ନୀପ ସୁବାସ୍
ତରଳିତ ତମିର ତ ଶୀକରିତ ସମୀରିତ
ଶିହରିତ ମନ ଓର ପାଶ୍
ସଜନୀ ! କୈସନ ଯାଇହୁଁ ଘର୍ ।
ଯାଇହୁଁତ ଅପବାଦ ନ ହଲେ ମରି ଥାଁ ସଖି
କଣଗୀ କହଥେ ମୋର ଶାଶ୍
ଭୂଷଣୀ ନନଦ ସାଥେ ବହୋ ଭୂଆସେନ୍ ଯତେ
କତେ ଯେ ହାଁସଥେଁ ଚଉପାଶ୍
ସଜନୀ ! କୈସନ ଯାଇହୁଁ ଘର୍
ବାଁଶରୀ ମେ ବାରବାର୍ ବୋଲ୍‌ଓ୍ୱଥେ ପିଏ ମଲ
ରାଖୁ ନା ରାଖୁ ଲାଜଡର୍ ।

